# ଜଗତ୍ ଚିତର

ଅଧ୍ୟାପକ ଦାମୋଦର ଶର୍ମା

ଓଡ଼ିଶା ରାଜ୍ୟ ପାଠ୍ୟ ପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା

# ଜନ୍ ଡିଉଇ


ଲେଖକ

ଅଧ୍ୟାପକ ଦାମୋଦର ଶର୍ମା

ଦର୍ଶନ ବିଭାଗ, ମହିଳା କଲେଜ, ପୁରୀ



୧୯୭୨





ପ୍ରକାଶକ

ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା

ଭୁବନେଶ୍ୱର

# JOHN DEWEY

Published by the Orissa State Bureau of Text Book Preparation and Production Under the centrally sponsored scheme of production of Books and Literature in Regional Languages at the University level of the Government of India in the Ministry of Education and Social Welfare (Department of Culture) New Delhi.

Written by :

**Sri Damodar Sharma**

Lecturer in Philosophy,

Womens' College, Puri.

Reviewed by :

**Sri S. K. Gupta**

Reader in Philosophy,

M. P. C. College, Paripada.

Language Scrutinised by :

**Dr. Dhaneswar Mohapatra**

Lecturer in Oriya,

Ravenshaw College, Cuttack.

First Edition—1976



Published by :

Orissa State Bureau of Text Book Preparation and Production, Bhubaneswar.

Publication No—175

Printed at :

Mahalaxmi Press,

Sahebzada bazar,

Cuttack-2.

**Price—Rs 3 50**

# ପ୍ରସ୍ତାବନା

ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ଓଡ଼ିଶା ସରକାରଙ୍କ ଆନୁକୂଲ୍ୟରେ ୧୯୭୦ ମସିହା ମାର୍ଚ୍ଚ ୧୧ ତାରିଖରେ ସ୍ଥାପିତ ହୋଇଛି । ଏହି ସଂସ୍ଥା ପ୍ରତିଷ୍ଠାର ଉଦ୍ଦେଶ୍ୟ —

୧ । ସାଧାରଣ ଭାବେ ଶିକ୍ଷା ପ୍ରସାରରେ ସହାୟତା ଦାନ ଓ ଏହାର ସମ୍ପ୍ରସାରିତ ବିଧାନ ।

୨ । ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକ, ଶିକ୍ଷକମାନଙ୍କ ନିମନ୍ତେ ନିର୍ଦ୍ଦେଶକ ପୁସ୍ତକ ଛାତ୍ରମାନଙ୍କ ପାଇଁ ସହାୟକ ବହି ଶିକ୍ଷାନୁଷ୍ଠାନଗୁଡ଼ିକରେ ଶିକ୍ଷାଦାନ ଓ ବିଦ୍ୟା ଚର୍ଚ୍ଚାର ପ୍ରସାର ଉପଯୋଗୀ ଶିକ୍ଷା ସମ୍ପର୍କିତ ସାହିତ୍ୟ ଓ ଉଚ୍ଚ ଶିକ୍ଷା ନିମନ୍ତେ ଆବଶ୍ୟକ ପୁସ୍ତକ ପ୍ରଣୟନ ।

୩ । ଓଡ଼ିଆରେ ପାଠ୍ୟପୁସ୍ତକ ରଚନାରେ ଜ୍ଞାନୀ; ଅଭିଜ୍ଞ ଓ ପ୍ରବୀଣ ଲେଖକମାନଙ୍କୁ ଉତ୍ସାହଦାନ, ସରକାର ଅଥବା ଅନ୍ୟାନ୍ୟ ଉପଯୁକ୍ତ କର୍ତ୍ତୃପକ୍ଷଙ୍କ ଦ୍ୱାରା ଶିକ୍ଷାର ବିଭିନ୍ନ ସ୍ତର ଓ ପାଠ୍ୟକ୍ରମ ନିମନ୍ତେ ନିର୍ଦ୍ଧାରିତ ବିଭିନ୍ନ ବିଷୟରେ ପ୍ରାମାଣିକ ବହିର ଓଡ଼ିଆରେ ଅନୁବାଦ, ସରକାର ବା ଅନ୍ୟାନ୍ୟ କର୍ତ୍ତୃପକ୍ଷଙ୍କୁ ଆବେଦନ କରି ଏ ପୁସ୍ତକଗୁଡ଼ିକ ନିମନ୍ତେ ସେମାନଙ୍କ ଅନୁମୋଦନ ଲାଭ ।

୪ । ପାଠ୍ୟପୁସ୍ତକ ପ୍ରଣୟନ ସମ୍ପର୍କରେ ଗବେଷଣାର ବ୍ୟବସ୍ଥା ଓ ଏଥି ନିମନ୍ତେ ସହାୟତା, ଶିକ୍ଷାର ବିଭିନ୍ନ ପଦ୍ଧତି ସମ୍ପର୍କିତ ସାହିତ୍ୟର ଗବେଷଣା, ଶିକ୍ଷା ବ୍ୟାପାରରେ ସହାୟତା, ସାଧାରଣ ଶିକ୍ଷାଗତ ମାନବୃଦ୍ଧିରେ ସହଯୋଗ ।

୫ । ସାଧାରଣ ଶିକ୍ଷାଗତ ମାନର ଉନ୍ନତି ବିଧାନ ଉଦ୍ଦେଶ୍ୟରେ ପାଠ୍ୟକ୍ରମ ଓ ଶିକ୍ଷାକ୍ରମ ବିଷୟରେ ସରକାର ଓ ଉପଯୁକ୍ତ କର୍ତ୍ତୃପକ୍ଷଙ୍କୁ ପ୍ରସ୍ତାବ ଓ ସୁପାରିଶ, ଏହାର ସୁଚିନ୍ତିତ ପରିକଳ୍ପନା ଓ ଉନ୍ନତି ବିଧାନ ।

୬ । ଗ୍ରନ୍ଥାଗାର ସ୍ଥାପନ ଓ ସଂରକ୍ଷଣ ପୂର୍ବକ ସାଧାରଣ ଭାବେ ଗବେଷଣାରେ ସହାୟତା ଏବଂ ବିଶେଷ ଭାବେ ଶିକ୍ଷାକ୍ରମ, ପାଠ୍ୟକ୍ରମ ଓ ପାଠ୍ୟପୁସ୍ତକ ପ୍ରଣୟନ ସମ୍ପର୍କରେ ସହଯୋଗ ଦାନ ।

୭ । ଭାରତ ସରକାର ବା ଓଡ଼ିଶା ସରକାରଙ୍କ ଆନୁକୂଲ୍ୟରେ ଲଭ କରାଯାଉଥିବା ଦାନପତ୍ରଗୁଡ଼ିକର ସଂରକ୍ଷଣ, ଉପଯୋଗ ଓ ସନ୍ତୋଷଜନକ ହିସାବ ରକ୍ଷା ।

୮ । ପୁସ୍ତକଗୁଡ଼ିକର ଅବାଧ ଯୋଗାଣ ସମ୍ପର୍କରେ ଯେ କୌଣସି ଯୋଜନା କାର୍ଯ୍ୟକାରୀ କରିବା ।

ସଂସ୍ଥା ତରଫରୁ ମୁଁ ଏହି ପୁସ୍ତକର ଲେଖକ ଅଧ୍ୟାପକ ଦାମୋଦର ଶର୍ମା ସମୀକ୍ଷକ ଅଧ୍ୟାପକ ଏସ୍. କେ. ଗୁପ୍ତ ଓ ଭାଷା ସଂଶୋଧକ ଅଧ୍ୟାପକ ଧନେଶ୍ୱର ମହାପାତ୍ରଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି, ଓଡ଼ିଶାର ଅଧ୍ୟାପକ ଅଧ୍ୟାପିକାବୃନ୍ଦ କଲେଜ ସ୍ତରରେ ଓଡ଼ିଆରେ ଶିକ୍ଷାଦାନ କଲେ ଏବଂ ଛାତ୍ରଛାତ୍ରୀମାନେ ପରୀକ୍ଷାରେ ସେମାନଙ୍କ ଉତ୍ତର ଓଡ଼ିଆରେ ଲେଖିବାରେ ବ୍ରତୀ ହେଲେ ଆମ ସଂସ୍ଥା ଦ୍ୱାରା ପ୍ରକାଶିତ ଉପାଦେୟ ପୁସ୍ତକଗୁଡ଼ିକର ସଦୁପଯୋଗ ହେବ ଏବଂ ଏହି ସଂସ୍ଥା ପ୍ରତିଷ୍ଠାର ମହତ୍ ଉଦ୍ଦେଶ୍ୟ ସାଧିତ ହେବ ।

ଭୁବନେଶ୍ୱର
ମାର୍ଚ୍ଚ ୨୪,

ଗଦାଧର ମିଶ୍ର
ନିର୍ଦ୍ଦେଶକ
ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ
ଓ ପ୍ରକାଶନ ସଂସ୍ଥା

# —ଏହି ପୁସ୍ତକଟି ସମ୍ବନ୍ଧରେ—

ପ୍ରଖ୍ୟାତ ଆମେରିକାର ଦାର୍ଶନିକ ଅଧ୍ୟାପକ ଜନ୍ ଡିଉଇଙ୍କ ବିହିତ ପୂର୍ଣ୍ଣାଙ୍ଗ ଦର୍ଶନର ଏକ ସଂକ୍ଷିପ୍ତ, ସହଜ, ସରଳ, ମାର୍ମିକ, ତାତ୍ତ୍ୱିକ ତଥା ସାର ସଂଗ୍ରହୀ ଆଲୋଚନା କରାଯାଇଛି ଉକ୍ତ ପୁସ୍ତକଟିରେ । ପୁସ୍ତକଟି ଡିଉଇଙ୍କ ଦର୍ଶନର ଏକ ଯଥାର୍ଥ ସାରତତ୍ତ୍ୱ (Synopsis) । ଏଥିରେ ଡିଉଇଙ୍କ ଦର୍ଶନର ବିଭିନ୍ନ ବିଷୟବସ୍ତୁ ତଥା ବିଭାଗୀୟ ଆଲୋଚନା ଗୁଡ଼ିକୁ ମୁଁ ମଧ୍ୟ ବିଭିନ୍ନ ପରିଚ୍ଛେଦରେ ବିଭକ୍ତ କରି ଆଲୋଚନା କରିଛି । ଡିଉଇଙ୍କର ରଚନାବଳୀ ଗୁଡ଼ିକ ସୁହଜଲଭ୍ୟ ହୋଇ ନଥିବାରୁ ତାଙ୍କର ବିହିତ ପୂର୍ଣ୍ଣାଙ୍ଗ ଦର୍ଶନ ଉପରେ ଏପରି ଏକ ସଂକ୍ଷିପ୍ତ ଏବଂ ସାର ସଂଗ୍ରହୀ ଲେଖା ନିଶ୍ଚିତ ଭାବେ କଷ୍ଟକର । ଏଥିପାଇଁ ମୋତେ କେତେକ ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଛି । ପୁସ୍ତକଟିରେ ମୁଁ ଶୁଦ୍ଧ ତଥା ପ୍ରଚଳିତ ଖାଣ୍ଟି ଓ ନବୀନ ଓଡ଼ିଆ ଭାଷାର ବ୍ୟବହାର କରିଛି । ଏଥିରେ ଆଲୋଚିତ ବିଷୟବସ୍ତୁଗୁଡ଼ିକ ସମ୍ପୂର୍ଣ୍ଣ ରୂପେ ଅଧ୍ୟାପକ ଡିଉଇଙ୍କର ମୂଳ ରଚନାବଳୀର ମୂଳ ତତ୍ତ୍ୱଗୁଡ଼ିକ ଉପରେ ନିଖୁଣ ଭାବେ ଆଧାରିତ । ଡିଉଇଙ୍କର ବହୁ ସମାଲୋଚକମାନଙ୍କର ପୁସ୍ତକ ଏବଂ ଲେଖା ତଥା ଡିଉଇଙ୍କର ବିଭିନ୍ନ ରଚନାବଳୀ ଗୁଡ଼ିକୁ ଏଥିରେ ମୁଁ ମୋର ସହାୟକ ଗ୍ରନ୍ଥ ରୂପେ ବ୍ୟବହାର କରିଛି ।

ଦର୍ଶନ କ୍ଷେତ୍ରରେ ଅଧ୍ୟାପକ ଡିଉଇ ଏକ ନୂତନ ଦିଗନ୍ତର ସନ୍ଧାନ ଦେଇଛନ୍ତି । ତାଙ୍କୁ ଏବଂ ତାଙ୍କର ବିହିତ ପୂର୍ଣ୍ଣାଙ୍ଗ ଦର୍ଶନକୁ ସହଜ ଓ ସରଳ ଭାବେ ବୁଝିବାରେ ଏହି ପୁସ୍ତକଟି ନିଶ୍ଚିତ ଭାବେ ପାଠକ ମାନଙ୍କର ସହାୟକ ହେବ ବୋଲି ମୋର ବିଶ୍ୱାସ ।

ଅବଶେଷରେ ଏହି ପୁସ୍ତକଟିକୁ ଲେଖିବାରେ ଓଡ଼ିଶା ସରକାରଙ୍କର "ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥାର" ଶ୍ରଦ୍ଧା ଓ ସମ୍ମାନଭାଜନ କର୍ମକର୍ତ୍ତାମାନେ ମୋତେ ଯେଉଁ ସୁଯୋଗ ଦେଇଛନ୍ତି, ସେଥିପାଇଁ ମୁଁ ସେମାନଙ୍କ ନିକଟରେ ମୋର ବିନମ୍ର କୃତଜ୍ଞତା ଜଣାଉଛି ।

**ଦାମୋଦର ଶର୍ମା**

ତା ୧୪।୧୦।୭୫

ଦଶହରା

# ସୂଚୀପତ୍ର

---

# ଜନ୍ ଡିଉଇଙ୍କ ସଂକ୍ଷିପ୍ତ ଜୀବନୀ

## (କ) ଜନ୍ମ ଓ ଶୈଶବ *

ଦାର୍ଶନିକ ଅଧ୍ୟାପକ ଜନ୍ ଡିଉଇ ନୂତନ ଇଂଲଣ୍ଡର ବର୍ଲିଙ୍ଗଟନ୍ ସହରରେ ୧୮୫୯ ମସିହା ଅକ୍ଟୋବର ତା ୨୦ ତାରିଖରେ ଏକ ମଧ୍ୟବିତ୍ତ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ଜଣେ ସାଧାରଣ ତେଜରାତି ବ୍ୟବସାୟୀ ଥିଲେ । ସେ ତାଙ୍କର ପିତାମାତାଙ୍କର ଥିଲେ ତୃତୀୟ ପୁତ୍ର ସନ୍ତାନ । ତାଙ୍କର ପିତାଙ୍କ ନାମ ଥିଲା ଆର୍ଚିବାଲ୍ଡ ସ୍ପ୍ରାଗ୍ ଡିଉଇ ଏବଂ ମାତାଙ୍କ ନାମ ଥିଲା ଶ୍ରୀମତୀ ଲୁସିନା ରିଚ । ତାଙ୍କର ମାତା ଶ୍ରୀମତୀ ଲୁସିନା ରିଚ, ତାଙ୍କ ପିତାଙ୍କଠାରୁ ବୟସରେ ପ୍ରାୟ ୨୦ ବର୍ଷ କନିଷ୍ଠା ଥିଲେ । ପିତା ସ୍ପ୍ରାଗ୍ ଡିଉଇ ପ୍ରାୟ ୫୦ ବର୍ଷ ବୟସରେ ତାଙ୍କୁ ବିବାହ କରିଥିଲେ । ଅତି ବିଳମ୍ବରେ ବିବାହ କରିବା ତାଙ୍କ ବଂଶର ପରଂପରା ଥିଲା । ଜନ୍ ଡିଉଇଙ୍କ ପିତା ସ୍ପ୍ରାଗ୍ ଡିଉଇଙ୍କର ଅସାଧାରଣ ସ୍ମରଣ ଶକ୍ତି ଥିଲା । ଶିଶୁ ଜନ୍ ଡିଉଇଙ୍କର ମେଧା ଏବଂ ସ୍ମରଣଶକ୍ତି ତାଙ୍କ ପିତାଙ୍କଠାରୁ ଆହୁରି ଅଧିକ ତୀକ୍ଷ୍ଣ ଏବଂ ପ୍ରଖର ଥିଲା । ଜନ୍ ଡିଉଇଙ୍କ ସମେତ ସେ ଥିଲେ ଚାରିଭାଇ । ତାଙ୍କର ଜ୍ୟେଷ୍ଠ ଭାଇ ଜନ୍ମଦିନରୁ ନଷ୍ଟ ଯାଇଥିଲେ । ଶିଶୁ ଜନ ଡିଉଇ ଅନ୍ୟ ଦୁଇଭାଇ ଡାଭିସ୍ ରିଚ ଏବଂ ସବ କନିଷ୍ଠ ଚାର୍ଲସ୍ ମାଇନର ତଥା ପଡ଼ୋଶୀ ପିଲାମାନଙ୍କ ସହିତ ନିଜଗୃହ ନିକଟସ୍ଥ ଏକ ସବ ସାଧାରଣ ବିଦ୍ୟାଳୟରେ ବାଲ୍ୟଶିକ୍ଷା ଆରମ୍ଭ କରିଥିଲେ । ବର୍ଗସିଁଙ୍କ ପରେ କିଶୋର ଡିଉଇ ଛାତ୍ର ଜୀବନରେ ଅତି ଉଚ୍ଚ କୋଟୀର ମେଧାବୀ ଛାତ୍ରଥିଲେ । ଉଚ୍ଚାଭିଳାଷୀ ଜନ ଡିଉଇ ଛାତ୍ର ଜୀବନରୁ ଜଣେ ଅଧ୍ୟାପକ ହେବାପାଇଁ ଦୃଢ଼ ସଂକଳ୍ପ କରିଥିଲେ । ଭରମାଉଣ୍ଟ ବିଶ୍ୱବିଦ୍ୟାଳୟରୁ ବି. ଏ. ପାଶ୍ କରି ସାରି, ସେ ଜନସ୍ ହପ୍କିନସ୍ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ ଉପାଧି ଲାଭ କରିଥିଲେ । ତାହାପରେ ମ୍ୟାଚିଗାନ୍ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା ଆରମ୍ଭ କରି ସେଥିରେ ସେ ଅତିରେ ଆଶ୍ଚର୍ଯ୍ୟଜନକ ତଥା ଆଶାତୀତ ସଫଳତା ହାସଲ କରି ପାରିଥିଲେ ।

---

* 1 Biography of J. Dewey-Edited & Written by his daughter-Jane M. Dewey.

2. History of Western Phil-by B. Russell.

3. History of Modern Phil-by W. K. Wright and Mayer.

୧୮୯୪ ମସିହାରେ ଡିଉଇ ଚିକାଗୋ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଭାବରେ ନିଯୁକ୍ତ ପାଆନ୍ତି । ସେଠାରେ ସେ ଗୋଟିଏ ପରୀକ୍ଷାମୂଳକ ବିଦ୍ୟାଳୟ ସ୍ଥାପନ କରିବାର ସୁଯୋଗ ପାଆନ୍ତି, ଏବଂ ଶିକ୍ଷାମୂଳକ ସମସ୍ତ ତତ୍ତ୍ୱକୁ କିପରି ଭାବେ ଅଭ୍ୟାସ ଓ ଆଚରଣରେ ପ୍ରକାଶ କରାଯାଇପାରେ, ସେଥିପାଇଁ ସେ ଗଭୀର ଭାବେ ମନୋନିବେଶ କରିଥାନ୍ତି । ୧୯୦୪ ମସିହାରେ ଡିଉଇ ଚିକାଗୋ ବିଶ୍ୱବିଦ୍ୟାଳୟରୁ ବିଦାୟ ନିଅନ୍ତି ଏବଂ ଠିକ୍ ତା ପରେ ପରେ କଲମ୍ବିଆ ବିଶ୍ୱବିଦ୍ୟାଳୟରେ ନିଯୁକ୍ତ ପାଆନ୍ତି । କଲମ୍ବିଆ ବିଶ୍ୱବିଦ୍ୟାଳୟରେ ସେ ନିଜର ଦକ୍ଷତା ଓ ଯୋଗ୍ୟତା ବଳରେ ଏକ ବିଶ୍ୱବିଖ୍ୟାତ ଅଧ୍ୟାପକ ଭାବେ ସ୍ୱୀକୃତି ଲାଭ କରନ୍ତି । ତାଙ୍କର ସୁନାମ ସାରା ଇଉରୋପ ଏବଂ ଏସିଆ ମହାଦେଶରେ ପ୍ରଚାର ଲାଭ କରେ ।

କଲମ୍ବିଆ ବିଶ୍ୱବିଦ୍ୟାଳୟରେ ତାଙ୍କର ଅଧ୍ୟାପନା କାର୍ଯ୍ୟରେ ସେପରି କିଛି ଧରାବନ୍ଧା ନିୟମ ନ ଥାଏ । ସେ ସେହି ସୁଯୋଗ ଫଳରେ ବହୁତ ତଥ୍ୟ ଉପରେ ଗବେଷଣା ଆରମ୍ଭ କରନ୍ତି । ଅବଶିଷ୍ଟ ଏବଂ ଅବସର ସମୟରେ ଇଉରୋପ ଓ ଏସିଆ ଭ୍ରମଣର ଯଥେଷ୍ଟ ସୁଯୋଗ ପାଆନ୍ତି । ଚୀନ ଏବଂ ଜାପାନ ଭ୍ରମଣ ତାଙ୍କ ପକ୍ଷରେ ଖୁବ୍ ଫଳପ୍ରଦ ହୁଏ । ଜାପାନରେ ସେ ଯେଉଁ ଭାଷଣମାଳା ପ୍ରଦାନ କରନ୍ତି ; ତାହା ହିଁ ହୁଏ ଅବଶେଷରେ ତାଙ୍କ ଦ୍ୱାରା ପ୍ରଣୀତ "ଦର୍ଶନର ପୁନର୍ଗଠନ" ପୁସ୍ତକର ଆତ୍ମା । ୧୯୨୪ ମସିହାରେ ସେ ତୁର୍କୀ ପରିଦର୍ଶନରେ ଗମନ କରନ୍ତି ଏବଂ ସେଠାରେ ସେ ତୁର୍କୀ ଦେଶର ଶିକ୍ଷା ପ୍ରଣାଳୀର ପୁନର୍ଗଠନ କରିବାକୁ ସୁଯୋଗ ପାଆନ୍ତି । ଠିକ୍ ତାର ୨୦ ବର୍ଷ ପରେ ମେକ୍ସିକୋର ଗ୍ରୀଷ୍ମକାଳୀନ ବିଦ୍ୟାଳୟରେ ନିଯୁକ୍ତିଲାଭ କରନ୍ତି । ୧୯୨୮ ମସିହାରେ ସେ ପୁନଃ ରୁଷ ଭ୍ରମଣରେ ଯାଇ ସେଠାରେ ରୁଷୀୟ ଶିକ୍ଷା ପଦ୍ଧତି ଉପରେ ଅନୁଧ୍ୟାନ ଆରମ୍ଭ କରନ୍ତି । ସେ ମାର୍କସିଜିମ୍‌କୁ କୌଣସି ସ୍ଥଳରେ ଗ୍ରହଣ କରିନାହାନ୍ତି, ବରଂ ବାର୍ଟ୍ରାଣ୍ଡରସେଲଙ୍କ ପରି ସମସ୍ତ ପ୍ରକାର ଏକତନ୍ତ୍ରବାଦକୁ ବିରୋଧ କରିଆସିଛନ୍ତି । ସେ କଲମ୍ବିଆ ବିଶ୍ୱବିଦ୍ୟାଳୟ ପରିତ୍ୟାଗ କଲା ପରେ ମଧ୍ୟ ନିଜକୁ ସର୍ବଦା ଦାର୍ଶନିକ ଗବେଷଣା ଓ ପଠନ କାର୍ଯ୍ୟରେ ନିୟୋଜିତ କରିଆସିଛନ୍ତି । ସେ ତାଙ୍କର ଦର୍ଶନ ଓ ମତବାଦକୁ ସର୍ବତ୍ର ପ୍ରଚାର କରିବାକୁ ଉଦ୍ୟମ କରନ୍ତି । ତାଙ୍କର ଲେଖାର ଶୈଳୀ ଏବଂ ଭଙ୍ଗୀ ପ୍ରାୟ ହିଗେଲିଆନ ଲିଖନ ଶୈଳୀ ସହିତ ସମତୁଲ ; କିନ୍ତୁ ବର୍ଗସିଁଙ୍କ ଲେଖନୀ ଚାତୁରୀ ଏବଂ କାବ୍ୟିକ ଶୈଳୀ ଡିଉଇଙ୍କ ଲେଖାରେ କ୍ୱଚିତ୍ ପରିଦୃଷ୍ଟ ହୁଏ । ଯାହାକୁ ଗୋଟିଏ ପଦରେ କହିହେବ, ଡିଉଇ କିନ୍ତୁ ତାକୁ ଗୋଟିଏ ଅନୁଚ୍ଛେଦରେ ପ୍ରକାଶ କରିଥାନ୍ତି । ତଥାପି ତାଙ୍କର ଯୋଗୁ ହିଁ କେବଳ ଆମେରିକୀୟ ଦର୍ଶନରେ ଅଭ୍ୟୁଦୟ ଘଟିଛି । କେବଳ ଦର୍ଶନ କ୍ଷେତ୍ରରେ କାହିଁକି, ଡିଉଇଙ୍କ ଯୋଗୁ ହିଁ ଆମେରିକୀୟ ଶିକ୍ଷା, ରାଜନୀତି, ଧର୍ମ ନୀତିଶାସ୍ତ୍ର ଓ କଳାର ପ୍ରଭୂତ ବିକାଶ ସାଧିତ ହୋଇ, ସେଠାରେ ନୂତନ ଯୁଗ ଏବଂ ଦର୍ଶନର

ସୂତ୍ରପାତ୍ ହୋଇଛି । ସମାଜର ବିକାଶ ଓ ପ୍ରଗତି ପାଇଁ ଡିଉଇ ଚରମ ତ୍ୟାଗ କରିବା ସଙ୍ଗେ ସଙ୍ଗେ ତାହାକୁ ସେ ଏକ ପରମ କର୍ତ୍ତବ୍ୟ ରୂପେ ମାନିନେଇଛନ୍ତି ଏବଂ ସେଥିପାଇଁ ସେ ସର୍ବଦା ଲଢ଼ିଆସିଛନ୍ତି । ଏକଛତ୍ରବାଦ, ପ୍ରଭୁତ୍ୱବାଦ ତଥା ସମସ୍ତ ପ୍ରକାର ଅସାର ଏବଂ ବିତଣ୍ଡାବାଦ ବିରୁଦ୍ଧରେ ସେ ଗୁରୁ-ଗାମ୍ଭୀର ସ୍ୱର ଉତ୍ତୋଳନ କରିଆସିଛନ୍ତି ।

## (ଖ) ଡିଉଇଙ୍କର ବୌଦ୍ଧିକ ବିକାଶ

ଅଧ୍ୟାପକ ଡିଉଇଙ୍କର ଦର୍ଶନ ପରିପକ୍ୱତା ଲାଭ କରେ ହେଗେଲୀୟ ଦର୍ଶନର ପ୍ରଭାବରେ । ଡବ୍ୟଲ୍ୟୁ. ଟି. ହ୍ୟାରିସଙ୍କ ସମ୍ପାଦନାରେ ପ୍ରକାଶିତ "The journal of Speculative Philosophy"କୁ ଡକ୍ଟର ଡିଉଇ ବହୁ ଲେଖା ପଠାନ୍ତି । ତାଙ୍କର ଲେଖାବଳୀକୁ ଶ୍ରୀଯୁକ୍ତ ହ୍ୟାରିସ ବହୁତ ପ୍ରଶଂସା ଏବଂ ପସନ୍ଦ କରିବା ସଙ୍ଗେ ସଙ୍ଗେ, ଡିଉଇଙ୍କୁ ଅଶେଷ ଉତ୍ସାହ ଓ ପ୍ରେରଣା ଯୋଗାଇଥାନ୍ତି । ହେଗେଲଙ୍କ ଇତିହାସ ତତ୍ତ୍ୱ ଓ ଡାଇଲେକ୍‌ଟିକ୍‌ର ଦ୍ୱନ୍ଦ୍ୱାତ୍ମକ ଧାରା ମଧ୍ୟରେ ଅଧ୍ୟାପକ ଡିଉଇ ହେଗେଲଙ୍କ ଜ୍ଞାନ ମୀମାଂସାର ଏକ ସମନ୍ୱିତ ଆଧାରର ସନ୍ଧାନ ପାଉଥାନ୍ତି । ହେଗେଲଙ୍କ ପ୍ରତ୍ୟୟବାଦ ତଥା ଆଦର୍ଶବାଦର ମହାନତାକୁ ଡିଉଇ ବହୁ ଭାବରେ ପ୍ରଶଂସା କରୁଥାନ୍ତି । ସେ କଦାପି ଡାରୁଇନ୍, ହାକ୍‌ସଲେ ଏବଂ ସ୍ପେନ୍‌ସରଙ୍କର ଦର୍ଶନ ତତ୍ତ୍ୱଗୁଡ଼ିକର ଅନ୍ଧଭକ୍ତ ନ ଥାନ୍ତି କିମ୍ବା ସେସବୁକୁ ଅନ୍ଧ ଭାବରେ ଅନୁସରଣ କରୁ ନ ଥାନ୍ତି । କାରଣ ଡିଉଇଙ୍କର ବିଭିନ୍ନ ପ୍ରାଚୀନ ଦାର୍ଶନିକ ତତ୍ତ୍ୱରାଜି ତଥା ଚିନ୍ତାଧାରା ଭିତରେ ପ୍ରଗାଢ଼ ଏବଂ ଘୋର ପ୍ରବେଶ ଥାଏ । ସେ ପ୍ଲେଟୋଙ୍କୁ ପ୍ରଶଂସା ଏବଂ ପସନ୍ଦ କରୁଥାନ୍ତି । ତାଙ୍କ ମତରେ ଦର୍ଶନ ପ୍ଲେଟୋଙ୍କ ରିପବ୍ଲିକକୁ ଫେରିଯିବା କଥା, କିନ୍ତୁ ପ୍ଲେଟୋଙ୍କର 'ପ୍ରତ୍ୟୟ ତତ୍ତ୍ୱ,କୁ ନୁହେଁ । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ପ୍ରଜ୍ଞାନୀ ଡିଉଇଙ୍କ ଉଦ୍ଦେଶ୍ୟ ଥାଏ, ଦର୍ଶନକୁ ସାମାଜିକ ସମସ୍ୟା ମଧ୍ୟକୁ ଟାଣିଆଣିବା—କାରଣ ଏହାଦ୍ୱାରା ଦର୍ଶନ ସମାଜର ଅଶେଷ କଲ୍ୟାଣ ଓ ମଙ୍ଗଳ ସାଧନ କରିପାରିବ ବୋଲି, ତାଙ୍କର ଦୃଢ଼ ବିଶ୍ୱାସ ଜନ୍ମିଥାଏ । ଦର୍ଶନ କେବଳ କେତେକ ବୌଦ୍ଧିକ, ଅଲୌକିକ, ପାରମାର୍ଥିକ, ଅତିକ୍ରମଣୀୟ ଏବଂ ଅନିର୍ବଚନୀୟ ଚିନ୍ତା ତଥା ତର୍କର ଗଣ୍ଡି ଭିତରେ ଆବଦ୍ଧ ହୋଇ ରହିବ ନାହିଁ । ଦର୍ଶନ ସମାଜକୁ ନୂତନ କରି ଗଢ଼ିତୋଳିବା ପାଇଁ ହେବ ଏକ ନିସ୍ତ୍ୟାମକ ତଥା ଆୟୁଧ ସଦୃଶ । ତଦନୁସାରୀ ଏହି ତଥାକଥିତ ପ୍ରଚଳିତ ଦର୍ଶନର ପରମ୍ପରା ଏବଂ ଗତିଧାରା ସମ୍ପୂର୍ଣ୍ଣ ଭାବେ ପରିବର୍ତ୍ତିତ ହେବା ଉଚିତ୍ । ତେଣୁ ସମାଜ ସହିତ ଦର୍ଶନର ମଧ୍ୟ ପୁନର୍ଗଠନ ଲୋଡ଼ା ବୋଲି ଅଧ୍ୟାପକ ଡିଉଇ ଅଭିମତ ଦିଅନ୍ତି । 'ଜ୍ଞାନ ହିଁ ଶକ୍ତି' ବେକନଙ୍କର ଏ ଉକ୍ତିକୁ ଡିଉଇ ମାନିନେଇଥାନ୍ତି ।

ଡାରଉଇନ, ହକ୍‌ସଲେ ଏବଂ ସ୍ପେନ୍‌ସରଙ୍କ ବ୍ୟତୀତ ଡିଉଇ କେମ୍ସଙ୍କ ଦର୍ଶନ ଦ୍ୱାରା ବହୁ ଭାବରେ ମଧ୍ୟ ପ୍ରଭାବିତ ଏବଂ ଅନୁପ୍ରାଣିତ ହୋଇଥାନ୍ତି । ଦାର୍ଶନିକ ପନ୍ଥା ତଥା

ଦାର୍ଶନିକ ପ୍ରତ୍ୟୟବାଦ ସ୍ଥିର କରିବାରେ ଡିଉଇ ଜେମ୍‌ସଙ୍କୁ ସମ୍ପୂର୍ଣ୍ଣ ଭାବେ ଅନୁକରଣ ଏବଂ ଅନୁସରଣ କରିଛନ୍ତି ; କିନ୍ତୁ ଦର୍ଶନରେ ବୈଜ୍ଞାନିକ ଦୃଷ୍ଟିଭଙ୍ଗୀ ଆନୟନରେ ଡିଉଇ ଜେମ୍‌ସଙ୍କଠାରୁ ବଳିପଡ଼ିଛନ୍ତି । ତଥାପି ଧର୍ମ ସମ୍ବନ୍ଧୀୟ ବିଚାର ଧାରାରେ ଡିଉଇ, ଜେମ୍‌ସଙ୍କଠାରୁ ଧର୍ମ ପ୍ରତି ନିଶ୍ଚିତ ଭାବେ ନିଷ୍ଠୁରତା ପ୍ରକାଶ କରିଛନ୍ତି । ସର୍ବୋପରି ହେଗେଲୀୟାନ ପରମ୍ପରା ଏବଂ ଗତିଧାରା ଯେପରି ଡିଉଇଙ୍କ ଦର୍ଶନରେ ଦେଖିବାକୁ ମିଳେ, ଜେମ୍‌ସଙ୍କ ପରମ୍ପରା ସେପରି ଭାବରେ ତାଙ୍କ ଦର୍ଶନରେ ଦେଖିବାକୁ ମିଳେ ନାହିଁ । ଏତଦ୍‌ବ୍ୟତୀତ ଡିଉଇଙ୍କର ରାଜନୀତି ମତବାଦ ଜେମ୍‌ସଙ୍କଠାରୁ ଅଳ୍ପ ବ୍ୟକ୍ତିନିଷ୍ଠ ବା ବ୍ୟକ୍ତି-କୈନ୍ଦ୍ରିକ ଅଟେ ।

## (ଗ) ଡିଉଇଙ୍କ ରଚନାବଳୀ

ଅଧ୍ୟାପକ ଡିଉଇଙ୍କ ରଚନାବଳୀ ଅନେକ । ୧୮୮୨ ମସିହାଠାରୁ ୧୯୩୭ ମସିହା ପର୍ଯ୍ୟନ୍ତ ତାଙ୍କ ଦ୍ୱାରା ପ୍ରଣିତ ଏବଂ ତାଙ୍କ ଦ୍ୱାରା ଓ ଉପରେ ଲିଖିତ ନିବନ୍ଧାବଳୀର ସଂଖ୍ୟା ଅଗଣିତ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏଠାରେ କେବଳ ତାଙ୍କ ନିଜଦ୍ୱାରା ପ୍ରଣିତ ପୁସ୍ତକଗୁଡ଼ିକକୁ କେତୋଟି ଦିଗରୁ ବିଭିନ୍ନ ଶ୍ରେଣୀଭୁକ୍ତ କରାଯାଇପାରେ ।

ପ୍ରଥମତଃ ପ୍ରାବନ୍ଧିକ ରଚନାବଳୀ ମଧ୍ୟରେ ଆମେ ତାଙ୍କର । (୧) ଅନୁଭୂତି ଓ ପ୍ରକୃତି । (୨) ସତ୍ୟାନୁସନ୍ଧାନ । (୩) ତର୍କଶାସ୍ତ୍ର । (୪) ପ୍ରୟୋଗବାଦୀ ତର୍କଶାସ୍ତ୍ର ନିବନ୍ଧାବଳୀ । (୫) ଆମେ କିପରି ଚିନ୍ତାକରୁ । (୬) ଏବଂ ଦର୍ଶନରେ ପୁନର୍ଗଠନ ପୁସ୍ତକଗୁଡ଼ିକ ଅନ୍ତର୍ଭୁକ୍ତ । ଦ୍ୱିତୀୟତଃ ତାଙ୍କର ଶିକ୍ଷା ସମ୍ବନ୍ଧୀୟ ରଚନାବଳୀ ମଧ୍ୟରେ । (୧) ବିଦ୍ୟାଳୟ ଏବଂ ସମାଜ । (୨) ଗଣତନ୍ତ୍ର ଏବଂ ଶିକ୍ଷା ପ୍ରଧାନ । ତୃତୀୟତଃ ତାଙ୍କର ନୀତିଶାସ୍ତ୍ର ସମ୍ବଳିତ ରଚନାମାନଙ୍କ ମଧ୍ୟରେ ଟଫସଙ୍କ ସହାୟତା ଓ ସହଯୋଗରେ ଲିଖିତ । (୧) ନୀତିଶାସ୍ତ୍ର ଏବଂ ସ୍ୱକୀୟ ରଚନା । (୨) ମନୁଷ୍ୟର ପ୍ରକୃତି ଓ ଚରିତ୍ର ସର୍ଜନ ବିଧିତ । ଚତୁର୍ଥରେ ତାଙ୍କ ଦ୍ୱାରା ପ୍ରଣୀତ ସାମାଜିକ ଦର୍ଶନ ପୁସ୍ତକମାନଙ୍କ ମଧ୍ୟରେ । (୧) ଚରିତ୍ର ଏବଂ ଘଟଣା । (୨) ସ୍ୱାଧୀନତା ଏବଂ ସଂସ୍କୃତି ସର୍ବୋତ୍ତମ ଅବଦାନ । ପଞ୍ଚମତଃ ତାଙ୍କର ରାଜନୀତିକ ଦର୍ଶନ ମଧ୍ୟରେ ଜନସାଧାରଣ ଏବଂ ସେମାନଙ୍କର ସମସ୍ୟା । ରାଜନୀତିକ ପୁସ୍ତକ ହିସାବରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରେ । ଷଷ୍ଠତଃ ତାଙ୍କର "ଏକ ସାଧାରଣ ବିଶ୍ୱାସ" ଧର୍ମସମ୍ବନ୍ଧୀୟ ରଚନା ଭାବରେ ଏକ ବିଶେଷ କୃତି । ଶେଷତଃ ଡିଉଇଙ୍କର ସୌନ୍ଦର୍ଯ୍ୟ ବିଜ୍ଞାନ ପୁସ୍ତକ ଭାବରେ "କଳା ଏକ ଅନୁଭୂତି" ପୁସ୍ତକଟି ବିଶେଷ ଭାବେ ପ୍ରଶଂସିତ ଏବଂ ଆଦୃତ ।

———

# ପ୍ରାକ୍ କଥନ *

ଠିକ୍ ପ୍ରଥମ ମହାସମର ପରେ ପରେ ଆମେରିକାନ୍ ଅଧ୍ୟାପକ ଡକ୍ଟର ଡିଉଇଙ୍କ ଦ୍ୱାରା ଲିଖିତ ପ୍ରବନ୍ଧାବଳୀଗୁଡ଼ିକ ଉପରେ ଏହି ପୁସ୍ତକ ସନ୍ନିବେଶିତ ବିଷୟବସ୍ତୁଗୁଡ଼ିକ ଆଧାରିତ । ଅଧ୍ୟାପକ ଡିଉଇଙ୍କର ଦାର୍ଶନିକ ଚିନ୍ତାଧାରା, ସାମାଜିକ ଦୃଷ୍ଟିଭଙ୍ଗୀ, ତର୍କ ମୀମାଂସା, ଶିକ୍ଷା ତତ୍ତ୍ୱ, ନୀତିଶାସ୍ତ୍ର, ରାଜନୈତିକ ଦର୍ଶନ, ଧର୍ମ ତତ୍ତ୍ୱ ସୌନ୍ଦର୍ଯ୍ୟ ତତ୍ତ୍ୱ ତତ୍ତ୍ୱ ମୀମାଂସା ଇତ୍ୟାଦିର ସରଳ, ସଂକ୍ଷେପ ତଥା ମାର୍ମିକ ଏବଂ ତାତ୍ତ୍ୱିକ ଆଲୋଚନା କରାଯାଇଛି । ପ୍ରଥମ ମହାସମର ପୂର୍ବରୁ ଓ ପରେ ପରେ ଏ ବିଶ୍ୱରେ ଯାହା ସବୁ ଘଟିଯାଇଛି ଏବଂ ଘଟୁଛି, ତା ପୁନର୍ବାର ଆଉ ଏକପ୍ରକାର ନୂତନ ପରିସ୍ଥିତି, ପରିବେଶ ଓ ବାତାବରଣ ପ୍ରତ୍ୟକ୍ଷ ଏବଂ ପରୋକ୍ଷ ଭାବରେ ଅନବରତ ସୃଷ୍ଟି କରିବାରେ ଲାଗିଛି । ଏପରି ଏକ ପରିପ୍ରେକ୍ଷୀରେ ବିଶ୍ୱରେ ଦର୍ଶନ ପରି ଏକ ମହାନ ଓ ବ୍ୟାପକ ବିଷୟବସ୍ତୁର 'ପୁନର୍ଗଠନ' ଅନିବାର୍ଯ୍ୟ ହୋଇପଡ଼ିଛି । "ଦାର୍ଶନିକତତ୍ତ୍ୱ ରାଜି"ର ପୁନର୍ଗଠନ ଅପେକ୍ଷା 'ଦର୍ଶନ'ର ଆମୂଳଚୂଳ ପରିବର୍ତ୍ତନ ତଥା ପୁନର୍ନିର୍ମାଣ ଉପରେ ଅଧ୍ୟାପକ ଡିଉଇ ବିଶେଷ ଗୁରୁତ୍ୱ ଆରୋପ କରିଛନ୍ତି । ଯେଉଁ ଧାରଣା ଏବଂ ପ୍ରତ୍ୟୟ ନେଇ ଏବଂ ଯେଉଁ ସବୁ ପରିସ୍ଥିତିରେ ବିଶ୍ୱରେ ଦର୍ଶନ ଗଢ଼ିଉଠିଥିଲା ଏବଂ 'ଦର୍ଶନ ଶାସ୍ତ୍ର' ତଥା 'ଦାର୍ଶନିକ ଚିନ୍ତାଧାରାର ମୂଳଭିତ୍ତି ପଡ଼ିଥିଲା ସେ ବେଳ ଆଜି ଆଉ ନାହିଁ । ସମୟର ଚକ ଘୂରି ବୁଲି ଯାଉଛି—ଅତୀତ କେଉଁ ପଛରେ ପଡ଼ିଗଲାଣି । ଅତୀତର ଦର୍ଶନ ସମ୍ବନ୍ଧୀୟ ଆମର ସମସ୍ତ ପ୍ରକାର ପୂର୍ବ ଧାରଣା ଓ ପ୍ରତ୍ୟୟଗୁଡ଼ିକୁ ଆଜି ଆମକୁ ପରିବର୍ତ୍ତନ କରିବାକୁ ପଡ଼ିବ ଏବଂ ବହୁ କ୍ଷେତ୍ରରେ ତହିଁ ମଧ୍ୟରୁ କେତେଗୁଡ଼ିକୁ ମଧ୍ୟ ସମ୍ପୂର୍ଣ୍ଣ ଭାବେ ପରିତ୍ୟାଗ କରିବାକୁ ପଡ଼ିବ । ତାହା ନ ହେଲେ ଆଜି ବିଶ୍ୱରେ ଯେଉଁ ସବୁ ନୂତନ ପରିସ୍ଥିତି ହୋଇଛି, ସେଗୁଡ଼ିକୁ ଆମେ ସମ୍ପୂର୍ଣ୍ଣ ଭାବେ ଆୟତ୍ତ କରିପାରିବା ନାହିଁ । ସେଥିପାଇଁ ଦର୍ଶନ ମଧ୍ୟ ଆମକୁ ଉଚିତ୍ ମାର୍ଗରେ ପରିଚାଳିତ କରିପାରିବ ନାହିଁ, କିମ୍ବା ନୂତନ ଦିଗ୍‌ଦର୍ଶନ ଦେଇପାରିବ ନାହିଁ । ତେଣୁ ଅଧ୍ୟାପକ ଡିଉଇଙ୍କ ମତରେ ବିଶ୍ୱରେ ଏହି ପରିବର୍ତ୍ତିତ ତଥା ଅସ୍ଥିର ପରିସ୍ଥିତିକୁ ଆଖି ଆଗରେ ରଖି ଦର୍ଶନର ସଂଜ୍ଞା, ଦର୍ଶନର କାର୍ଯ୍ୟ, ଦର୍ଶନର ଲକ୍ଷ୍ୟ ଏବଂ ଆଭିମୁଖ୍ୟ ତଥା ଦର୍ଶନର ପ୍ରୟୋଗ ପ୍ରଣାଳୀ ନିର୍ଣ୍ଣୟ କରିବାକୁ ପଡ଼ିବ । କାରଣ ମନୁଷ୍ୟର ଜୀବନ ଓ ତାର ଲକ୍ଷ୍ୟକୁ ନେଇ ଦର୍ଶନର ସୃଷ୍ଟି । ତେଣୁ ମନୁଷ୍ୟ ଜୀବନଧାରାର ପରିବର୍ତ୍ତନ ସଙ୍ଗେ ସଙ୍ଗେ ଦର୍ଶନର ମଧ୍ୟ ପୁନର୍ନିର୍ମାଣ ଘଟିବା ସର୍ବାଦୌ ବିଧେୟ । ସେହି ଦୃଷ୍ଟିରୁ ଦର୍ଶନର ପୁନର୍ନିର୍ମାଣ ତଥା ପୁନର୍ଗଠନ ଆଜି ଦାର୍ଶନିକମାନଙ୍କ ପକ୍ଷରେ ଅନିବାର୍ଯ୍ୟ ହୋଇପଡ଼ିଛି ।

ପ୍ରଥମ ମହାସମର ପୂର୍ବରୁ ମନୁଷ୍ୟ ଯେଉଁ ଆଶା, ଆକାଂକ୍ଷା ନେଇ ବଞ୍ଚି ଆସିଥିଲା, ତାହାର ଉପରେ ବିଶ୍ୱର ପ୍ରଥମ ମହାସମର ଏକ କ୍ରୂର କୁଠାରାଘାତ କଲା । ଠିକ୍ ତା ପରେ ପରେ ମନୁଷ୍ୟ ମନରେ ଏକ ଅନିଶ୍ଚିତତାର ଛାୟା ଖେଳିଗଲା । କେହି କାହାକୁ ବିଶ୍ୱାସ ଏବଂ ଭରସା କଲେ ନାହିଁ । ଭବିଷ୍ୟତ ଉପରେ ମନୁଷ୍ୟ ମଧ୍ୟ ଆଉ ଆଶାଭରସା ରଖିପାରିଲା ନାହିଁ । ଜୀବନର ପ୍ରତ୍ୟେକ ବିଭାଗରେ ଘନ ଅନ୍ଧକାରର କାଳିମା ଛାଇଗଲା ।

ଏପରି ଏକ ସଙ୍କଟସନ୍ଧିବେଳେ 'ଦର୍ଶନ' କିମ୍ବା କୌଣସି 'ଦାର୍ଶନିକ' ଏ ବିଶ୍ୱକୁ ପ୍ରକୃତ ଦିକ୍‌ଦର୍ଶନ ଦେଇପାରିଲେ ନାହିଁ । ଅଥବା ବିଶ୍ୱର ସମସ୍ତ ଜଟିଳ ସମସ୍ୟାଗୁଡ଼ିକର ସମାଧାନ କରିବାକୁ ସୁକ୍ଷମ ହେଲେ ନାହିଁ । ଅତୀତର ପରମ୍ପରା ଏବଂ ତାର ଗବେଷଣା ଦର୍ଶନ ବିଶ୍ୱକୁ ନୂତନ ଇଙ୍ଗିତ, ସଙ୍କେତ ଏବଂ ଦିଗ୍‌ଦର୍ଶନ ଦେଇପାରିଲା ନାହିଁ । ଅତୀତର ନୀତି-ନିୟମ-ଭାବ-ଭାବନା ତଥା ବିଶ୍ୱାସ ଓ ଭରସା ଯେହିପରି ଅତୁଟ ରହିଲା । ସେଗୁଡ଼ିକୁ ଦୋହଲାଇ ଦେବାକୁ କେହି ହେଲେ ସାହସ କଲେ ନାହିଁ । ଦର୍ଶନର କୌଣସି ନୂତନ ପ୍ରୟୋଗବିଧି ମଧ୍ୟ ସ୍ଥିର ହୋଇପାରିଲା ନାହିଁ । ଫଳରେ ଦର୍ଶନ ସମାଜକୁ ଆଗେଇନେବାକୁ ସମ୍ପୂର୍ଣ୍ଣ ରୂପେ ଅକ୍ଷମ ହେଲା । ଏହାବ୍ୟତୀତ ଅତୀତରେ ପୁଷ୍କଳ ପାଣ୍ଡିତ୍ୟ, ଅସାର ସିଦ୍ଧାନ୍ତ ଏବଂ ସିଛଳ ବନ୍ଧ୍ୟା ଦାର୍ଶନିକ ତତ୍ତ୍ୱରାଜି ମଧ୍ୟ ବିଶ୍ୱକୁ ନୂତନ ଆଲୋକ ଦେଇ ନ ପାରି, ସବୁବେଳେ ଖାଲି ଫମ୍ପା ଆବାଜ ହୋଇ ରହିଗଲା । ପରନ୍ତୁ ଏସବୁ ସତ୍ତ୍ୱେ ବିଶ୍ୱରେ ଅଶେଷ ପରିବର୍ତ୍ତନ ଘଟିଛି, ମନୁଷ୍ୟ ନିଜର ଭାଗ୍ୟ, ସ୍ଥିତି ଓ ଅଗ୍ରଗତି ସମ୍ବନ୍ଧରେ ଗମ୍ଭୀର ଭାବେ ମନୋନିବେଶ କରିବାକୁ ଆରମ୍ଭ କରିଛି । ମନୁଷ୍ୟର ଭୌଗୋଳିକ-ସୀମା-ସରହଦ ଅତି ଦ୍ରୁତ ଗତିରେ ପରିବର୍ତ୍ତିତ ହେବାରେ ଲାଗିଛି । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ଦର୍ଶନର ଆଶୁ ପୁନର୍ଗଠନ କରିବା ଦାର୍ଶନିକମାନଙ୍କ ପକ୍ଷରେ ଆଜି ଅନିବାର୍ଯ୍ୟ ହୋଇ ପଡ଼ିଛି । ତାହା ନ ହେଲେ ଦର୍ଶନ ମନୁଷ୍ୟ ସମାଜର କାଳ ସଙ୍ଗେ ତାଳ ଦେଇ ନ ପାରି ଏକ ପରିତ୍ୟକ୍ତ ବିଷୟବସ୍ତୁ ହୋଇ ପଡ଼ିରହିବ । ଯେଉଁମାନେ ଅତୀତର ସ୍ତାବକ ଏବଂ ପୁରାତନକୁ ଜାବୁଡ଼ି ଧରି ରଖିବାକୁ ଚାହାନ୍ତି । ସେମାନେ ଅଧ୍ୟାପକ ଡୁଇଙ୍କର 'ଦର୍ଶନର ପୁନର୍ଗଠନ' ଯୋଜନାକୁ ଏକ "ଭ୍ରାନ୍ତ ଦୃଷ୍ଟିଭଙ୍ଗୀ" କହି ଉଡ଼ାଇଦେବାକୁ ଉଦ୍ୟମ କରିଛନ୍ତି । ଅତୀତରେ ଯେଉଁ ଐତିହ୍ୟ, ପରଂପରା ଏବଂ ସଂସ୍କୃତିକୁ ଆଶ୍ରୟକରି ଦର୍ଶନ ଗଢ଼ିଉଠିଥିଲା ତାହା କିନ୍ତୁ ବାସ୍ତବତାର ବହୁ ଦୂରରେ ରହିଯାଇଥିଲା । ଗତ କେତେ ଶତ ବର୍ଷ ମଧ୍ୟରେ ବିଶ୍ୱରେ ଯେଉଁ ବୈଜ୍ଞାନିକ ଶୈଳ୍ପିକ, ରାଜନୈତିକ ଓ ଯାନ୍ତ୍ରିକ ବିପ୍ଳବମାନ ସଙ୍ଘଟିତ ହୋଇ ଗଲା । ସେଥିରୁ ଯଥେଷ୍ଟ ସୂଚନା ମିଳେ ଯେ ପୁରାତନ ଦର୍ଶନ ଉପରେ ମନୁଷ୍ୟର ଆସ୍ଥା ଓ ବିଶ୍ୱାସ ନାହିଁ ଏବଂ ପୁରାତନ ଦର୍ଶନ ମନୁଷ୍ୟ ସମାଜକୁ ଉଚିତ ଏବଂ ଉନ୍ନତ ମାର୍ଗରେ ପରିଚାଳିତ କରିପାରିବ ନାହିଁ । ଅତୀତର ଦାର୍ଶନିକ,

ଦୃଷ୍ଟିଭଙ୍ଗୀ ତଥା ନୀତି-ନିୟମଗୁଡ଼ିକର ଉପାଦେୟତା ମଧ୍ୟ ସମ୍ପୂର୍ଣ୍ଣ ପରିବର୍ତ୍ତିତ ସମାଜ ପ୍ରତି ପ୍ରଯୁଜ୍ୟ ହୋଇପାରିବ ନାହିଁ । ତଥାପି ଅତୀତର ଘଟଣାବଳୀ, ପରଂପରା ସଂସ୍କୃତି, ଦର୍ଶନ ଏବଂ ନୀତି-ନିୟମଗୁଡ଼ିକୁ ସମ୍ପୂର୍ଣ୍ଣ ଭାବେ ଉପେକ୍ଷା କରାଯାଇ ନ ପାରେ । ତେଣୁ ଅତୀତକୁ ବିଶ୍ଳେଷଣ କରି ଏବଂ ଅତୀତ ଉପରେ "ବର୍ତ୍ତମାନକୁ" ଆଧାରିତ କରି ଆଜି ନୂତନ ଭାବେ ଦର୍ଶନକୁ ପୁନର୍ଗଠିତ କରିବା ପାଇଁ ପ୍ରଖ୍ୟାତ ଅଧ୍ୟାପକ "ଡକ୍ଟର ଡିଉଇ" ଦୃଢ଼ମତ ପୋଷଣ କରିଅଛନ୍ତି ।

• କେବଳ ଅତୀତର ବୌଦ୍ଧିକତା ଉପରେ ସମାଜର ସମସ୍ତ ସମସ୍ୟାକୁ ଛାଡ଼ିଦେଲେ ଚଳିବ ନାହିଁ । ସବୁ କାର୍ଯ୍ୟକୁ ଦେଖି ଶୁଣି, ପରୀକ୍ଷାନିରୀକ୍ଷା କରି ବିଶ୍ୱର ସାମାଜିକ ତଥା ପ୍ରାକୃତିକ ଉପାଦାନଗୁଡ଼ିକୁ ବୁଝିବାକୁ ପଡ଼ିବ ଏବଂ ସର୍ବୋପରି ସେଗୁଡ଼ିକୁ ମନୁଷ୍ୟ ସମାଜର ସାମୂହିକ ହିତରେ ବିନିଯୋଗ କରିବାକୁ ପଡ଼ିବ । ଆଜିର ବୈଜ୍ଞାନିକ ତଥା କାରିଗରି ଏବଂ ଯାନ୍ତ୍ରିକ କୌଶଳର ଉଦ୍ଭାବନ ପରେ ପରେ ମନୁଷ୍ୟର ଜିଜ୍ଞାସୁ ମନୋବୃତ୍ତି, ମନୁଷ୍ୟର ଜ୍ଞାନପିପାସା ଏବଂ ସେଗୁଡ଼ିକର ସିଦ୍ଧାନ୍ତକୁ ଯେପରି ଭାବେ ଆଜି ଆମେ ଗ୍ରହଣ କରିନେଇଛୁ, ତାହା ସେପରି ପୂର୍ବରୁ କେବେହେଲେ ଘଟି ନ ଥିଲା । ଗ୍ରୀସ ସଭ୍ୟତାର ପ୍ରାକ୍‌କାଳରୁ ଜ୍ଞାନ ଏବଂ କର୍ମ ମଧ୍ୟରେ କୌଣସି ଅସମନ୍ୱୟତା ରହିଥିଲା. ତାହା ସିଦ୍ଧାନ୍ତ ଏବଂ ଆଚରଣ ମଧ୍ୟରେ କୌଣସି ପ୍ରକାରେ ଏକ ସମନ୍ୱିତ ସମ୍ପର୍କ ରଖିପାରିଲା ନାହିଁ । ଏହାର କାରଣ ସ୍ୱରୂପ ଏତିକି କୁହାଯାଇପାରେ ଯେ, ସେତେବେଳେ ସମାଜର ସମସ୍ତ ପ୍ରକାର ହିତକର । ଶୁଭଙ୍କର ଏବଂ ଆବଶ୍ୟକ କାର୍ଯ୍ୟଗୁଡ଼ିକ କ୍ରୀତ ଦାସମାନଙ୍କ ଦ୍ୱାରା କରାଯାଉଥିଲା ; କିନ୍ତୁ ତଥାକଥିତ ପଣ୍ଡିତ ଏବଂ ଜ୍ଞାନୀ ବ୍ୟକ୍ତିମାନେ ବଡ଼ ବଡ଼ କଥାମାନ କହି, ନିଜେ କିଛି କରୁ ନ ଥିଲେ । ଯେତେବେଳେ ଶିଳ୍ପ ଏବଂ ବିଜ୍ଞାନ କ୍ଷେତ୍ରରେ ଅଗ୍ରଗତି ଦେଖାଦେଲା, ସେତେବେଳେ ଜ୍ଞାନ ଆହରଣର ପ୍ରଣାଳୀ ବହୁ ଭାବରେ ପ୍ରେକ୍ଷଣ ଏବଂ ପରୀକ୍ଷଣ ନିୟମ ଉପରେ ପର୍ଯ୍ୟବସିତ ହେଲା । ଏହା ନିରାଟ ସତ୍ୟ ଯେ ଜ୍ଞାନ ଏବଂ କର୍ମର ସମ୍ପର୍କ ଅବିଚ୍ଛେଦ୍ୟ । ତେଣୁ ଅଧ୍ୟାପକ ଡିଉଇଙ୍କ ମତରେ ଅତୀତର ଜ୍ଞାନ ଆହରଣ ପ୍ରଣାଳୀ ଏବଂ ଅବଲମ୍ବିତ ଉପାୟଗୁଡ଼ିକର ଆଶୁ ପରିବର୍ତ୍ତନ କରିବାକୁ ପଡ଼ିବ ଏବଂ ଜ୍ଞାନାନୁସନ୍ଧାନ ତଥା ଜ୍ଞାନର ପ୍ରୟୋଗ ବିଧିକୁ ନୂତନ ରୂପରେଖ ଦେଇ ଦର୍ଶନକୁ ପୁନର୍ଗଠନ କରିବା ସଙ୍ଗେ ସଙ୍ଗେ ବିଶ୍ୱରେ ମନୁଷ୍ୟ ସମାଜକୁ ନୂତନ ଭାବେ ଗଢ଼ିବାକୁ ପଡ଼ିବ । ଅତୀତର ବୁଦ୍ଧି ତଥା ବୌଦ୍ଧିକ ବିଗ୍ରହର ଧାରାକୁ ପରିହାର କରି ପ୍ରତ୍ୟକ୍ଷାନୁଭୂତିକୁ ତର୍କାଶ୍ରୟୀ କରିବାକୁ ପଡ଼ିବ । ପରିବର୍ତ୍ତିତ ସମାଜ ଓ ଜୀବନକୁ ଲକ୍ଷ୍ୟରଖି ଦର୍ଶନର ପୁନର୍ନିର୍ମାଣ ଆଜିର ଦାର୍ଶନିକମାନଙ୍କର ପ୍ରଥମ ପ୍ରଧାନକାର୍ଯ୍ୟ ହେବା ଉଚିତ ବୋଲି, ଅଧ୍ୟାପକ ଡିଉଇ ସର୍ବଦା ଘୋଷଣା କରିଆସିଅଛନ୍ତି ।

ମନୁଷ୍ୟର ସମସ୍ୟା ବହୁଳ ଜୀବନକୁ କେନ୍ଦ୍ରକରି ଦର୍ଶନର ଗତି ଏବଂ ପ୍ରକୃତି ଚିରଦିନ ପାଇଁ ସ୍ୱୀକୃତ । ତଥାପି ଭବିଷ୍ୟତରେ ମନୁଷ୍ୟ ଏ ବିଶ୍ୱରେ ଯେଉଁ ସଙ୍କଟ ଏବଂ ଉତ୍ତେଜନା ମଧ୍ୟରେ ଗତି କରିବାକୁ ବସିଛି । ଦର୍ଶନ ଯେପରି ତାକୁ ସେସବୁ ସଙ୍କଟ ଏବଂ ଉତ୍ତେଜନାରୁ ଉଦ୍ଧାର କରିପାରିବ । ସେସବୁକୁ ସମ୍ମୁଖରେ ରଖି ଦର୍ଶନକୁ ପୁନର୍ଗଠିତ କରିବାକୁ ଅଧ୍ୟାପକ ଡିଉଇ ଆହ୍ୱାନ କରିଛନ୍ତି । ପୁରାତନ ଦର୍ଶନ ଏବଂ ତାର ଦାର୍ଶନିକଗଣ ବିଶ୍ୱର ସମସ୍ତ ଘଟଣାବଳି ତଥା ସମସ୍ୟାଗୁଡ଼ିକୁ ଏକ ସ୍ଥାନାନ୍ତର ଓ କାଳାନ୍ତର, ନିତ୍ୟ, ଅନାଦି, ଅବିନାଶୀ । ଅଜର ଏବଂ ଅପରିବର୍ତ୍ତନୀୟ ପରମ ସତ୍ତା ଏବଂ ପରମ ତତ୍ତ୍ୱ ଉପରେ ସବୁବେଳେ ଆଧାରିତ କରି ଆସିଛନ୍ତି । ତଥାପି କାଳକ୍ରମେ ବୈଜ୍ଞାନିକମାନେ ତଥା ନୀତିବାଦୀମାନେ ସ୍ଥାନ ଏବଂ କାଳର ଭିନ୍ନ ଭିନ୍ନ ଅର୍ଥକରି ତାହାକୁ ବୁଝିବାକୁ ଆରମ୍ଭ କରିଛନ୍ତି । ପ୍ରୋକ୍ତ ଅନାଦି, ଅନନ୍ତ, ନିତ୍ୟ ଏବଂ ଚିରନ୍ତନ ପରମସତ୍ତା ଓ ତତ୍ତ୍ୱ ସର୍ବଦା ପରିବର୍ତ୍ତନ-ଶୀଳ ବୋଲି ଅଧୁନା ବୈଜ୍ଞାନିକ ଓ ନୀତିବାଦୀମାନେ ଘୋଷଣା କରୁଛନ୍ତି । ଏହି ପରିବର୍ତ୍ତନ ସୃଷ୍ଟିର ଏକ ନିୟମ ବୋଲି ସେମାନେ ବଳିଷ୍ଠଯୁକ୍ତି ବାଢ଼ିଛନ୍ତି । ବିଜ୍ଞାନ ଯେତେବେଳେ ଅଗ୍ରଗତି ପଥରେ ପାଦଦେଇଛି, ସେତେବେଳେ ମନୁଷ୍ୟର ନୈତିକ ତଥା ଅନ୍ୟାନ୍ୟ ବିଚାରଧାରା ସେହି ଅନାଦି ନିତ୍ୟ ଏବଂ ଚିରନ୍ତନ ସତ୍ତା ଏବଂ ତତ୍ତ୍ୱକୁ କେନ୍ଦ୍ରକରି ଏବଂ ଆଶ୍ରାକରି ତିଷ୍ଠିପାରିବ ନାହିଁ । ତାହା ଯଦି ହୁଏ ବିଜ୍ଞାନ ଓ ନୈତିକତା ମଧ୍ୟରେ ଏକ ଦୃଢ଼ ପ୍ରାଚୀର ଗଢିଉଠିବ । ତେଣୁ ଅଧ୍ୟାପକ ଡିଉଇଙ୍କ ମତରେ ବିଜ୍ଞାନ ଏବଂ ନୈତିକତା ସମାନ୍ତରାଳ ଭାବରେ ଅଗ୍ରଗତି କରି ମନୁଷ୍ୟ ସମାଜର ହିତ ଓ କଲ୍ୟାଣ ସାଧନ କରିବା ଉଚିତ । ତେଣୁ ନୀତି ଓ ନିୟମ ସ୍ଥାନ ଏବଂ କାଳ ସଙ୍ଗେ ପରିବର୍ତ୍ତିତ ହେବା ସର୍ବତଃ ବିଧେୟ । ପୁରାତନ ଏବଂ ଅତୀତକୁ ସମ୍ପୂର୍ଣ୍ଣ ଭାବେ ଆଶ୍ରାକରି "ବର୍ତ୍ତମାନକୁ" ମୂଲ୍ୟାୟନ କରିବା ଦ୍ୱାରା ବିଶ୍ୱର କୌଣସି ସମସ୍ୟା ସମାଧାନ ହୋଇପାରିବ ନାହିଁ । ବରଂ ଏହା ବିଶ୍ୱର କୌଣସି ସମସ୍ୟା ସମାଧାନ ହୋଇପାରିବ ନାହିଁ । ବରଂ ଏହା ବିଶ୍ୱରେ ବହୁ ସଙ୍କଟ ଜନକ ଏବଂ ଦୟନୀୟ ପରିସ୍ଥିତି ସୃଷ୍ଟି କରିବ । ତେଣୁ ଜୀବନ ଏବଂ ତାର ସମସ୍ୟା-ଗୁଡ଼ିକୁ ଏକ ବ୍ୟାପକ ଦୃଷ୍ଟିକୋଣରୁ ବିଚାର କରି 'ବର୍ତ୍ତମାନ' ଉପରେ ଅଶେଷ ଗୁରୁତ୍ୱ ଦେବାପାଇଁ ଅଧ୍ୟାପକ ଡିଉଇ ବିଶ୍ୱର ସମସ୍ତ ଦାର୍ଶନିକମାନଙ୍କୁ ଆହ୍ୱାନ କରିଛନ୍ତି ।

---

* (1) Reconstruction in Phil-J. Dewey (2) Dewey's Interpretation of History of Phil-by J. H. Rardatt.)

---

# ପ୍ରଥମ ପରିଚ୍ଛେଦ

# ଦର୍ଶନ ଏବଂ ତା'ର ପରିବର୍ତ୍ତିତ ରୂପରେଖ

## (କ) ମନୁଷ୍ୟ ଏବଂ ପଶୁ

ପ୍ରକୃତରେ ମନୁଷ୍ୟ ତାର ଅତୀତର ସ୍ମୃତି ଏବଂ ଅନୁଭୂତି ଗୁଡ଼ିକୁ ନିଜର ମାନସ ପଟରେ ସାଇତି ରଖିପାରୁଥିବାରୁ ସେ ପଶୁଠାରୁ ସର୍ବଦା ଭିନ୍ନ ବୋଲି ପରିଗଣିତ ହୋଇ ଆସିଛି । ମନୁଷ୍ୟର ସ୍ମୃତି ପଟରେ ଅତୀତ ଚିର ଜାଗ୍ରତ । ଆଜି ଯାହାସବୁ ମନୁଷ୍ୟ ଜୀବନରେ ଘଟି ଯାଉଛି, ତାହା ମନୁଷ୍ୟକୁ ବିଗତ ଦିନର ଘଟଣାବଳି ଗୁଡ଼ିକର ମଧ୍ୟ ସ୍ମରଣ କରାଇ ଦେଉଛି । ମନୁଷ୍ୟ ଏପରି ଏକ ଦୈବୀ, ଚେତନ, ଏବଂ ଆତ୍ମ ଶକ୍ତିର ଅଧିକାରୀ ହୋଇ ଆସିଥିବାରୁ, ସେ ପଶୁଠାରୁ ଊର୍ଦ୍ଧ୍ୱରେ ରହିଆସିଛି । ଗୋଟିଏ ଘଟଣା ପଶୁ ଜୀବନରେ ଘଟିଗଲା ପରେ, ତାଦ୍ୱାରା ସ୍ମୃତି ଏବଂ ଅନୁଭୂତି ପଶୁର ମନରୁ ଉଭେଇଯାଏ, ଏବଂ ପଶୁ କେବଳ ବର୍ତ୍ତମାନସର୍ବସ୍ୱ ହୋଇ ନିଜର ପ୍ରବୃତ୍ତି ଦ୍ୱାରା ପରିଚାଳିତ ହୁଏ । ବର୍ତ୍ତମାନ ହିଁ ପଶୁର ଏକମାତ୍ର ସମ୍ବଳ । ଅତୀତ ଏବଂ ଅନାଗତ ସମ୍ବନ୍ଧରେ ପଶୁ କଦାପି ଚେତନଶୀଳ ରହି ପାରେ ନାହିଁ, କିନ୍ତୁ ମନୁଷ୍ୟର ସମସ୍ତ ଘଟଣା, ସୁଖ-ଦୁଃଖ, ହସ-ଅଶ୍ରୁ ମନୁଷ୍ୟର ଚିତ୍ତ ପଟରେ ସର୍ବଦା ଜୀବନ୍ତ ରୂପେ ଉଦ୍ଭାସିତ ହେଉଥାଏ । ତେଣୁ ମନୁଷ୍ୟ କେବଳ ପଶୁ ତୁଲ୍ୟ ବାହ୍ୟ ଜଗତର ଘନ ଅରଣ୍ୟାନୀରେ ବଞ୍ଚିରହେ ନାହିଁ । ଅତୀତର ସ୍ମୃତି, ଶ୍ରୁତି, ପ୍ରତୀକ ଏବଂ ସୂଚନା ଗୁଡ଼ିକୁ ସମ୍ବଳ କରି ମନୁଷ୍ୟ ବର୍ତ୍ତମାନ ଓ ଭବିଷ୍ୟତ ପାଇଁ ବଞ୍ଚିରହେ । ମନୁଷ୍ୟ ପକ୍ଷରେ ଖଣ୍ଡିଏ 'ପ୍ରସ୍ତର' କେବଳ ଖଣ୍ଡିଏ 'ପ୍ରସ୍ତର' ହୋଇ ନପାରେ, ତାହା ମନୁଷ୍ୟର ପୂର୍ବପୁରୁଷ ମାନଙ୍କର ଏକ ସ୍ମୃତିସ୍ତମ୍ଭ ହୋଇ ପାରେ । ମନୁଷ୍ୟ ପକ୍ଷରେ ଏକ କ୍ଷୁଦ୍ର ଅଗ୍ନିକଣା ଯେ କେବଳ କିଞ୍ଚିତ ଉଷ୍ଣତା ପ୍ରଦାନ କରିପାରେ ତାହାନୁହେଁ ଏହା ମଧ୍ୟ ମନୁଷ୍ୟକୁ ଜୀବନୀ ଶକ୍ତି, ଧୈର୍ଯ୍ୟ ଓ ସାହସ ପ୍ରଦାନ କରିବା ସଙ୍ଗେ ସଙ୍ଗେ, ଏହା ତାର ଆତ୍ମସ୍ଫୂର୍ତ୍ତିର ଏକ ପ୍ରତୀକ ଅଟେ । ତେଣୁ ମନୁଷ୍ୟ ପଶୁଠାରୁ ଭିନ୍ନ ଏବଂ ମନୁଷ୍ୟର ମନୁଷ୍ୟତ୍ୱ ପଶୁର ପଶୁତ୍ୱଠାରୁ ଅନେକ ଗୁଣରେ ଶ୍ରେଷ୍ଠତର । ଉକ୍ତ ଦୁର୍ଲ୍ଲଭ ମନୁଷ୍ୟତ୍ୱ ଯୋଗୁଁ ମନୁଷ୍ୟ ସଂସ୍କୃତି ଗଢ଼ିଛି । ସଭ୍ୟତା ତୋଳିଛି ଏବଂ ନିଜକୁ ପଶୁତ୍ୱଠାରୁ ଦୂରରେ ରଖିପାରିଛି । ମନୁଷ୍ୟର ଯଦି ଆତ୍ମ ଚେତନ ଏବଂ ସ୍ମରଣ ଶକ୍ତି ନଥାନ୍ତା, ତାହା ହେଲେ ମନୁଷ୍ୟ ତାର ଅତୀତର କୌଣସି ଅନୁଭୂତିକୁ ନିଜର ମାନସ ପଟରେ ସାଇତି ରଖି ପାରି ନଥାନ୍ତା, ଫଳରେ ମନୁଷ୍ୟ ସମାଜରେ ସଂସ୍କୃତି, ସଭ୍ୟତା ଏବଂ ଦର୍ଶନ ବୋଲି ଆଜି ଆଉ କିଛି ନଥାନ୍ତା ।

## (ଖ) ଡିଉଇଙ୍କ ମତରେ ଦର୍ଶନ

ଅଧ୍ୟାପକ ଡିଉଇ ତାଙ୍କର 'ତାର୍କିକ ସିଦ୍ଧାନ୍ତ ଅଧ୍ୟୟନ' ପୁସ୍ତକରେ ନିଜର ଦର୍ଶନ ସମ୍ବନ୍ଧୀୟ ସମସ୍ତ ଚିନ୍ତାଧାରାର ବିଶଦ ବିଶ୍ଳେଷଣ ଏବଂ ଆଲୋଚନା କରିଛନ୍ତି । ତାଙ୍କର ଏତାଦୃଶ ବିଶ୍ଳେଷଣ ଦର୍ଶନର ଐତିହାସିକ ପରଂପରା ଏବଂ କ୍ରମାଗତ ଦାର୍ଶନିକ ଚିନ୍ତାଧାରାର ଉତ୍‌ଥାନ-ପତନର ଭିତ୍ତିଭୂମି ଉପରେ ପର୍ଯ୍ୟବସିତ । ତେଣୁ ତାଙ୍କର ଦର୍ଶନ ସମ୍ବନ୍ଧୀୟ ସମସ୍ତ ଚିନ୍ତାଧାରା ପୂର୍ଣ୍ଣତଃ ଐତିହାସିକ ଭିତ୍ତିଭୂମି ଉପରେ ଆଧାରିତ । ଡିଉଇଙ୍କ ଦ୍ୱାରା ଲିଖିତ "ଚିନ୍ତା ଏବଂ ତାର ବିଷୟ ବସ୍ତୁର ସମ୍ପର୍କ" ସନ୍ଦର୍ଭଟିରେ ସେ ସମ୍ବନ୍ଧରେ ତିନୋଟି ଦିଗରୁ ଅନୁସନ୍ଧାନ ଏବଂ ବିଶ୍ଳେଷଣ କରିଛନ୍ତି । ଏହି ତିନୋଟି ଦିଗ ବା ଦୃଷ୍ଟି କୋଣ ତିନୋଟି ବିଶେଷ ବୃତ୍ତ ଦ୍ୱାରା ପରିବେଷ୍ଟିତ । ଏହାର ପ୍ରଥମ ଦିଗଟି ଅନ୍ତରତମ ବୃତ୍ତ ଦ୍ୱାରା ପରିବେଷ୍ଟିତ ଯାହାକୁ କି ପ୍ରତିବିମ୍ବିତ ଚିନ୍ତା କିମ୍ବା ତାର୍କିକ ଅନ୍ୱେଷଣ ବୋଲି ବୁଝାଯିବ । ଦ୍ୱିତୀୟ ଦିଗଟି ମନୁଷ୍ୟ ମନର ସମସ୍ତ ପ୍ରକାର ଅନୁଭୂତି ଯଥା—ବ୍ୟାବହାରିକ, ସାମାଜିକ, ବୈଜ୍ଞାନିକ, ଧାର୍ମିକ, ନୈତିକ ଏବଂ ସୌନ୍ଦର୍ଯ୍ୟାନୁଭୂତିର ଗନ୍ତାଘର । ଶେଷୋକ୍ତ ତୃତୀୟ ଦିଗଟି ହେଉଛି ସମାଜ ତଥା ତାର ସଂସ୍କୃତିଗତ ସମସ୍ତ ସମସ୍ୟାର ଅନୁସନ୍ଧାନର ସ୍ଥଳୀ, ଯେଉଁଠାରେ କି ପ୍ରୋକ୍ତ ସମସ୍ୟା ଗୁଡ଼ିକର ଧାରାବାହିକ ଅନୁସନ୍ଧାନ ଚାଲିଥାଏ । ତେଣୁ ଅଧ୍ୟାପକ ଡିଉଇଙ୍କ ଦାର୍ଶନିକ ମତାମତ ଏବଂ ସିଦ୍ଧାନ୍ତ ଉକ୍ତ ତିନୋଟି ଦୃଷ୍ଟିକୋଣ ତଥା ଦିଗକୁ ନେଇ ଗଠିତ ଏବଂ ଏ ତିନୋଟି ସର୍ବଦା ପରସ୍ପର ସମ୍ବନ୍ଧଶୀଳ ଏବଂ ଅବିଚ୍ଛେଦ୍ୟ ।

ଦର୍ଶନ ମନୁଷ୍ୟ ସମାଜର ସମସ୍ତ ପ୍ରକାର ସମସ୍ୟାକୁ ଅନୁଧ୍ୟାନ ଓ ବିଶ୍ଳେଷଣ କରି ସେଗୁଡ଼ିକର ସମାଧାନ ପନ୍ଥା ସ୍ଥିର କରିବ ଏବଂ ତାହା ଦ୍ୱାରା ସମାଜକୁ ସର୍ବାଙ୍ଗ ସୁନ୍ଦର କରି ଗଢି ତୋଳି ପାରିବ । ତେଣୁ ଦର୍ଶନ ସମସ୍ତ ସାମାଜିକ ସମସ୍ୟାଗୁଡ଼ିକ ସହ ଏକ ସକ୍ରିୟ ସଂପର୍କ ରକ୍ଷା କରି ବୈଜ୍ଞାନିକ ପଦ୍ଧତିରେ ଯାବତୀୟ ସାମାଜିକ ସମସ୍ୟା ଗୁଡ଼ିକର ସମାଧାନ କରିପାରିବ । ଅଧ୍ୟାପକ ଡିଉଇ ପ୍ରଶ୍ନ କରନ୍ତି—'ଅନ୍ତର୍ନିହିତ ମନ ବହିର୍ଜଗତକୁ ଉତ୍ତମ ରୂପେ ବୁଝିବାକୁ ସକ୍ଷମ ହେବ କି ?' ଏ ପ୍ରଶ୍ନର ଉତ୍ତରରେ ନିଜେ ଅଧ୍ୟାପକ ଡିଉଇ କହନ୍ତି ଯେ 'ମନ ଓ ଜଗତର କ୍ରମାଗତ ପଛ ପରିବର୍ତ୍ତନ ଯୋଗୁଁ ଏହା ହିଁ ସମ୍ଭବ ହୋଇ ପାରିବ । ଅର୍ଥାତ ମନ ଏବଂ ଜଗତ ନିଜ ନିଜର ସ୍ଥିତି ପରିବର୍ତ୍ତନ କରିବେ—ଏହାର ମର୍ମ ହେଲା ଯେ ଜଗତକୁ ଅନ୍ତର୍ନିହିତ କରି ମନକୁ ବହିର୍ମୁଖୀ କରିବାକୁ ପଡ଼ିବ । ଏତିକି କରିବାକୁ ହେଲେ ଆମକୁ ସବୁପ୍ରକାର ଅବାସ୍ତବ, ଅସାର ଏବଂ ଉଦ୍ଭଟ ତଥା ନିଷ୍ଫଳ ସାର୍ବିକ ଚିନ୍ତାଧାରାକୁ ପରିହାର କରିବାକୁ ପଡ଼ିବ ଏବଂ ଜଗତର ସମସ୍ତ ଘଟଣାରାଜି ଓ ସମସ୍ୟାବଳୀକୁ ଭିନ୍ନ ଭିନ୍ନ ଭାବରେ ଏକ ବାସ୍ତବ ଓ ସମ୍ଭାବ୍ୟ ଦୃଷ୍ଟି କୋଣରୁ ବିଚାର କରି ସେସବୁର ସମାଧାନ କରିବାକୁ ପଡ଼ିବ । ତେଣୁ ଅଧ୍ୟାପକ ଡିଉଇଙ୍କ ମତରେ ଦର୍ଶନକୁ ଏଥିପାଇଁ ଏକ

ବାସ୍ତବ ଏବଂ ସାଧନା ମୂଳକ ପନ୍ଥା ବା ପ୍ରଣାଳୀକୁ ଅବଲମ୍ବନ କରିବାକୁ ପଡ଼ିବ । ଏହାଦ୍ୱାରା ସାଧନଭିତ୍ତିକ ପନ୍ଥା ଏବଂ ପ୍ରଣାଳୀ ଯେ କେତେଦୂର କାର୍ଯ୍ୟକାରୀ ଏବଂ ଫଳପ୍ରଦ ତାହା ଆଜି ବିଜ୍ଞାନ ପ୍ରମାଣ କରି ସାରିଛି । ତେଣୁ ଦର୍ଶନ ଏପରି ଏକ ବାସ୍ତବାଭିମୁଖୀ ତଥା ସାଧନଭିତ୍ତିକ ପନ୍ଥା ଓ ପ୍ରଣାଳୀକୁ ସର୍ବାଦୌ ଗ୍ରହଣ କରିନେବା ଉଚିତ ।

ଦର୍ଶନର ଏପରି ଏକ ବାସ୍ତବାଭିମୁଖୀ ତଥା ଇନ୍ଦ୍ରିୟାନୁଭବ ପ୍ରଣାଳୀ ଦାର୍ଶନିକଙ୍କୁ ନିଶ୍ଚିତ ଭାବେ ସର୍ବଦା ଉତ୍ସାହ ଓ ଉଦ୍ଦୀପନା ଯୋଗାଇ ଥାଏ । ଏତାଦୃଶ ଏକ କାର୍ଯ୍ୟକାରୀ ପ୍ରଣାଳୀ ଦ୍ୱାରା ଦର୍ଶନ ପ୍ରକୃତ ଭାବେ ପୁନର୍ଗଠିତ ହୋଇପାରିବ ବୋଲି ଅଧ୍ୟାପକ ଡିଉଇ ଦୃଢ଼ ଭାବେ ଆଶାପୋଷଣ କରିଛନ୍ତି । ଏହାଫଳରେ ଦାର୍ଶନିକ ମଧ୍ୟ ଜଣେ ସାଧାରଣ କର୍ମୀ, ସମାଜସେବୀ ତଥା ସମାଜ ଗଠନକାରୀ ଭାବରେ ସମାଜରେ ସ୍ୱୀକୃତ ଏବଂ ଆଦୃତ ହୋଇପାରିବେ । ବିଶ୍ୱରେ ଯାହାକିଛି ଉନ୍ନତ, ଉତ୍କୃଷ୍ଟ, ଶ୍ରେୟ ଏବଂ ମନୁଷ୍ୟର ସମସ୍ତ ସୁଖ, ଶାନ୍ତି ଓ ସମୃଦ୍ଧିର ପ୍ରତୀକ ତାହା ଦର୍ଶନ ଦ୍ୱାରା ସମ୍ଭବ ହୋଇପାରିବ ବୋଲି ସାଧାରଣ ଲୋକେ ନିଶ୍ଚୟ ସହଜରେ ଉପଲବ୍ଧି କରିପାରିବେ । ଦର୍ଶନର ଏପରି ଏକ ବାସ୍ତବ ଧର୍ମୀ ଉଦ୍ଦେଶ୍ୟ ଦ୍ୱାରା, ଦର୍ଶନ ଏକ ଅବାସ୍ତବ ତଥା ଇନ୍ଦ୍ରିୟାନୁଭବାତୀତ ବିଷୟବସ୍ତୁ ହୋଇ ରହିବ ନାହିଁ । ଯେହେତୁ ଦୁନିଆର ସମସ୍ତ ସମସ୍ୟା ପରିସ୍ଥିତିଗତ ଏବଂ ଅନୁଭୂତିମୂଳକ ତେଣୁ ସେହିସବୁ ସମସ୍ୟାଗୁଡ଼ିକ ବାସ୍ତବାନୁଭୂତ ତଥା ଇନ୍ଦ୍ରିୟାନୁଭବ ପ୍ରଣାଳୀ ଦ୍ୱାରା ସମାଧାନ ଓ ସମାପନ ହେବା ଉଚିତ । ଏହାକୁ ହିଁ ପ୍ରକୃତ ଦର୍ଶନ କୁହାଯିବା କାରଣ ଦର୍ଶନର ସମାସ୍ୟାବଳୀ ସମାଧାନମୂଳକ । ଦର୍ଶନର ସମସ୍ୟାଗୁଡ଼ିକ ସମାଧାନ ହୋଇପାରିବ ନାହିଁ ବୋଲି ଭାବିବା ଅନୁଚିତ । ଯଦି କେହି କହନ୍ତି ଯେ, ଦର୍ଶନର ସମସ୍ୟାବଳୀ ସମାଧାନ ହୋଇପାରିବ ନାହିଁ, ତାହାହେଲେ ଅଧ୍ୟାପକ ଡିଉଇଙ୍କ ମତରେ ଏହା ଏକ ମାନସିକ ଏବଂ ବୌଦ୍ଧିକ ବ୍ୟାଧି ବୋଲି ସୁନିଶ୍ଚିତ ଭାବେ ପରିଗଣିତ ହେବ ।

ତେଣୁ ଦର୍ଶନର ବିହିତ ପ୍ରଣାଳୀ ଇନ୍ଦ୍ରିୟାନୁଭବ ପ୍ରଣାଳୀ । ଏପରି ଏକ ପ୍ରଣାଳୀର କୌଣସି ଏକ ନିର୍ଦ୍ଦିଷ୍ଟ, ଅପରିବର୍ତ୍ତିତ ଏବଂ ଚିରନ୍ତନ ପଦ୍ଧତି ନାହିଁ । ଏହା ପରିସ୍ଥିତିକୁ ନେଇ ପରିବର୍ତ୍ତିତ ହେବା ସ୍ୱାଭାବିକ । ତେଣୁ ଡିଉଇଙ୍କ ମତରେ ଏତାଦୃଶ ଦାର୍ଶନିକ ପ୍ରଣାଳୀ ତାଙ୍କର ଉପରୋକ୍ତ ଦୁଇଗୋଟି ମଣ୍ଡଳ ବା ବୃତ୍ତର ସୀମାମଧ୍ୟରେ ସଂଘଟିତ ହୋଇ କାର୍ଯ୍ୟକାରୀ ହୋଇଥାଏ । **H. Joseph Ratener Says, "the method Dewey prescribed and has so extensively and effectively used is that of working back and forth between the larger and norrower fields transforming**

every increment upon one side into a method of work upon the other, and thereby testing it'-(Deweys conception of Philosphy-by J. Ratener-Phil of J Dewey page-56.)

ଏଥିରୁ ମୂଳତଃ ହିଁ ଏ କି ଡିଉଇଙ୍କର ଇନ୍ଦ୍ରିୟାନୁଭବ ପ୍ରଣାଳୀ ଦର୍ଶନର ଅପର୍ଯ୍ୟାପ୍ତ ସୀମା ତଥା ଅନୁଭୂତର ପର୍ଯ୍ୟାପ୍ତ ଶ୍ରେଣି ମଧ୍ୟରେ ସର୍ବଦା କ୍ରିୟାଶୀଳ । ଦର୍ଶର ସମସ୍ତ ବୁଦ୍ଧିପୂର୍ବକ ଅଧ୍ୟୟନ ଏବଂ ସମସ୍ତ ପ୍ରକାର ନୈତିକ ସମସ୍ୟା ଓ ମନୁଷ୍ୟର ସାଧାରଣ ଅନୁଭୂତି ମଧ୍ୟରେ ଏହା ସବୁବେଳେ କାର୍ଯ୍ୟକାରୀ ହେବା ସ୍ୱାଭାବିକ । ତେଣୁ ଦର୍ଶନ କେବଳ ସମସ୍ତ ପ୍ରକାର ଜଟିଳ ସାମାଜିକ ସମସ୍ୟାର ସମାଧାନ କରିବା ପାଇଁ ଉଦ୍ଦିଷ୍ଟ ହେବା ଉଚିତ ।

୧୯୦୩ ଏବଂ ୧୯୨୦ ମସିହା ମଧ୍ୟରେ ଅଧ୍ୟାପକ ଡିଉଇ Studies in logical theory ଏବଂ Reconstruction in Philosophy ଲେଖିଲେ । ଏହି ସମୟରେ ବିଶ୍ୱରେ ସାମାଜିକ ପରିସ୍ଥିତି ବହୁଳାଂଶରେ ପରିବର୍ତ୍ତିତ ହୋଇଥାଏ । ଦ୍ୱିତୀୟତଃ, ବିଶ୍ୱ ମହାସମର ଯୋଗୁଁ ମନୁଷ୍ୟର ଚିନ୍ତାରାଜ୍ୟରେ ବିଶେଷ ଆଲୋଡ଼ନ ଏବଂ ସାମାଜିକ କ୍ଷେତ୍ରରେ ବ୍ୟାପକ ପରିବର୍ତ୍ତନର ସୂଚନା ମିଳିଥାଏ । ସେତିକିବେଳେ ଅଧ୍ୟାପକ ଡିଉଇ ତାଙ୍କର ଦର୍ଶନରେ ପୁନର୍ଗଠନ ପୁସ୍ତକରେ ଦୁଇଟି ପ୍ରଧାନ ପ୍ରଶ୍ନ ଉତ୍ଥାପନ କରିଥାଆନ୍ତି । ପ୍ରଥମଟି ହେଲା ଦର୍ଶନର ଅନ୍ତର୍ଦୃଷ୍ଟିଭଙ୍ଗୀ "25-Vision" ଯାହାକି ଅତୀତ ମାନବର ସମସ୍ତ ପ୍ରକାର ଅନ୍ଧବିଶ୍ୱାସ, କୁସଂସ୍କାର ଉପରେ କୁଠାରଘାତ କରିଥାଏ । ଦ୍ୱିତୀୟଟିରେ ଦର୍ଶନର ପ୍ରଣାଳୀକୁ ବାସ୍ତବ ଏବଂ ସାମାଜିକ କରିବାରେ ଡିଉଇ ସାହେବ ଅଧିକ ଗୁରୁତ୍ୱ ଦିଅନ୍ତି । ଏହାଫଳରେ ବିଶ୍ୱର ସମସ୍ତ ପ୍ରକାର ସାମାଜିକ ଘଟଣାବଳୀ ତଥା ନୈତିକ ସମସ୍ୟା ଓ ସଙ୍କଟ ଗୁଡ଼ିକର ଆଶୁ ସମାଧାନ ହୋଇପାରିବ ବୋଲି ଅଧ୍ୟାପକ ଡିଉଇ ବିଶେଷ ଆଶାପୋଷଣ କରୁଥାନ୍ତି । ଉପରୋକ୍ତ ପ୍ରଧାନ ପ୍ରଶ୍ନ ପରସ୍ପର ବିରୋଧୀ ନ ହେଲେ ମଧ୍ୟ ସେ ଦୁଇଟିର ପରସ୍ପର ସଂଯୋଗରେ ଜୀବନ ଏବଂ ତାର ସମସ୍ତ ସମସ୍ୟାଗୁଡ଼ିକର ସମାଧାନ ନିଶ୍ଚିତ ଭାବେ ଯେ କରିହେବ ସେଥି ନିମନ୍ତେ ଅଧ୍ୟାପକ ଡିଉଇ ନିଜର ବଳିଷ୍ଠ ଯୁକ୍ତି ବ୍ୟାଖ୍ୟାନ କରିଛନ୍ତି ; କିନ୍ତୁ ଅଧ୍ୟାପକ ଡିଉଇ ସାମାଜିକ ଦର୍ଶନ ଉପରେ ଅଧିକ ଗୁରୁତ୍ୱ ଆରୋପ କରିଥାଆନ୍ତି । (The Philosophy of John Dewey, Page-62) Studies in logical theoryରେ ଅଧ୍ୟାପକ ବିଶ୍ୱର ସାଧାରଣ ସମସ୍ୟାବଳୀ ସମ୍ବନ୍ଧରେ ଯେଉଁ ସବୁ ଯୁକ୍ତି ବାଢ଼ିଥିଲେ, ସେଗୁଡ଼ିକୁ ତାଙ୍କର ପର ଲେଖାରେ ଟିକିଏ ଗୋଳମାଳିଆ କରିଦେଲେ । କାରଣ ମନୁଷ୍ୟ ଜୀବନର ପ୍ରତ୍ୟେକ

ଏକକ ଏବଂ ନିର୍ଦ୍ଦିଷ୍ଟ ସମସ୍ୟାଗୁଡ଼ିକୁ ନେଇ ଡିଉଇ ସେସବୁ ସମସ୍ୟାକୁ ଜୀବନର ସାଧାରଣ ସମସ୍ୟାମାନଙ୍କ ମଧ୍ୟରେ ଅଙ୍ଗୀଭୂତ କରିଦେଇ ସେସବୁଗୁଡ଼ିକର ସମାଧାନ ଖୋଜିନଥିଲେ । ଦର୍ଶନର ପାରମ୍ପରିକ ଗତିରେ ମୋଡ଼ଦେଇ, ତାକୁ ଏକ ନୂତନ ପଥର ଇଙ୍ଗିତଦେଲେ ଅର୍ଥାତ ଦର୍ଶନକୁ ଜୀବନର ବାସ୍ତବ କ୍ଷେତ୍ରକୁ ଟାଣିଆଣିଲେ । ଦର୍ଶନର ତତ୍ତ୍ୱଗୁଡ଼ିକୁ ବିଶ୍ୱଜୀବନର ଦୈନନ୍ଦିନ ସଂଗ୍ରାମ କ୍ଷେତ୍ରରେ ଅସ୍ତ୍ର ରୂପେ ବ୍ୟବହାର କରିବାକୁ ଉପଦେଶ ଦେଲେ । ଦର୍ଶନ ବିଜ୍ଞାନସିଦ୍ଧ ପ୍ରଣାଳୀକୁ ଅବଲମ୍ବନ କରି ସମାଜରେ କାର୍ଯ୍ୟକାରୀ ହେବାକୁ ସେ ଦୃଢ଼ ଭାବେ ଅନୁମୋଦନ କଲେ । ( **The Philosophy of John Dewey Page-64** ) ମନୁଷ୍ୟର ଭିନ୍ନ ଭିନ୍ନ ପ୍ରତ୍ୟୟ ଓ ଧାରଣାଗୁଡ଼ିକୁ ଏକ ସାଧାରଣ ନୀତି ନିୟମ ଓ ଧାରଣାର ପରିସରକୁ ଆଣି ସେସବୁର ସମାଧାନ ଖୋଜିବାକୁ ନିର୍ଦ୍ଦେଶ ଦେଲେ । ଏହା ଫଳରେ ସମସ୍ତ ପ୍ରକାର ଭିନ୍ନ ଭିନ୍ନ ସମସ୍ୟାଗୁଡ଼ିକ ସଂପୂର୍ଣ୍ଣଭାବେ ପରସ୍ପରର ଭିନ୍ନ ନ ହୋଇ ଗୋଟିଏ ଗୋଟିଏ ସାଧାରଣ ସମସ୍ୟା ଭାବରେ ଉଭା ହେବେ, ଏବଂ ଏଗୁଡ଼ିକର ସହଜ ଏବଂ ସୁଗମ ହୋଇ ପାରିବ। ଡିଉଇଙ୍କ ମତରେ ଦର୍ଶନର ଅନ୍ତର୍ଦୃଷ୍ଟି ଏବଂ ମନନଶୀଳତା କର୍ମର କଷଟି ପ୍ରସ୍ତରରେ ପରୀକ୍ଷିତ ହୋଇ ସବୁ ସମସ୍ୟାଗୁଡ଼ିକର ସମାଧାନ କରିପାରିବ। ଏହା ଦ୍ୱାରା ଦର୍ଶନ ସ୍ୱତଃ ପୁନର୍ଗଠିତ ହେବା ସଙ୍ଗେ ସଙ୍ଗେ ମନୁଷ୍ୟ ସମାଜକୁ ନୂତନ ଦିଗ୍‌ଦର୍ଶନ ଦେଇପାରିବ ଏବଂ ସମାଜ ବସ୍ତୁତଃ ନୂତନଭାବେ ଗଢ଼ିଉଠିବ ।

———

* 1, Deweys conception of Philosophy-Joseph Ratener.

2. Changing conception of Phil—Reconstruction in Phil-by. J. Dewey

3. History of western Phil-B. Russell.

# ଦ୍ୱିତୀୟ ପରିଚ୍ଛେଦ

# ଡିଉଇଙ୍କ ତାର୍କିକ ସିଦ୍ଧାନ୍ତ

## (କ)

ଅଧ୍ୟାପକ ଡିଉଇଙ୍କ 'ତର୍କଶାସ୍ତ୍ର' ଅର୍ଥାତ୍ ଅନୁସନ୍ଧାନତତ୍ତ୍ୱ ତାଙ୍କର ତାର୍କିକ ତତ୍ତ୍ୱର ଅଧ୍ୟୟନ ପୁସ୍ତକରେ ବର୍ଣ୍ଣିତ ତାର୍କିକ ତତ୍ତ୍ୱର ସ୍ୱରୂପ ଓ ପ୍ରକୃତିର ଏକ ପରିବର୍ଦ୍ଧିତ ପରିପ୍ରକାଶ ମାତ୍ର । ଉକ୍ତ ତତ୍ତ୍ୱଟିକୁ ମଧ୍ୟ ବିଶଦ ଏବଂ ବ୍ୟାପକ ଭାବେ ଡିଉଇ ଆଲୋଚନା କରିଛନ୍ତି ତାଙ୍କର 'ପରୀକ୍ଷାମୂଳକ ତର୍କଶାସ୍ତ୍ର ନିବନ୍ଧରେ । ଏତଦ୍‌ବ୍ୟତୀତ ଏହାର ସଂକ୍ଷିପ୍ତ ଟିପ୍ପଣୀ ଆମେ ପାଇବା ତାଙ୍କ ଦ୍ୱାରା ରଚିତ 'ଆମେ କିପରି ଚିନ୍ତାକରୁ' ପୁସ୍ତକରୁ । **(How we think)** ଉକ୍ତ ପୁସ୍ତକରେ ତାଙ୍କର ମୂଳତତ୍ତ୍ୱଟି ଅପରିବର୍ତ୍ତିତ ଥିଲେ ହେଁ ଏହା ମଧ୍ୟରେ ବହୁ ନୂତନ ଚିନ୍ତାଧାରା ମଧ୍ୟ ପ୍ରବେଶ କରିଯାଇଛି ।

ବିଚାର ଏବଂ ଜ୍ଞାନ ଡିଉଇଙ୍କର ସ୍ୱକୀୟ ମତବାଦ ଉପରେ ଆଧାରିତ । ଅଧ୍ୟାପକ ଡିଉଇ ନିଜର ମତବାଦର ପ୍ରତିଷ୍ଠା ପାଇଁ, ଦର୍ଶନର ଐତିହାସିକ ତଥା ପାରଂପରିକ ଦିଗକୁ ମଧ୍ୟ ଯଥେଷ୍ଟ ସମ୍ମାନ ଦେବା ସଙ୍ଗେ ସଙ୍ଗେ, ସେ ସବୁକୁ ତନ୍ନ ତନ୍ନ କରି ବିଶ୍ଳେଷଣ ଏବଂ ଅଧ୍ୟୟନ କରିଛନ୍ତି । ପରନ୍ତୁ ସେ ସର୍ବଦା ପୁରାତନ ଦର୍ଶନର ସେହି ଅନନ୍ତ, ଅସୀମ, ଅବିନାଶୀ, ଅନାଦି ଏବଂ ଅପରିବର୍ତ୍ତନୀୟ ପରମ ସତ୍ତା ଓ ସତ୍ୟ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ଆସିଛନ୍ତି । ତାଙ୍କ ମତରେ ଏପରି ଏକ ଅପରିବର୍ତ୍ତନୀୟ ଅବିନାଶୀ ଏବଂ ଚିରନ୍ତନ ପରମ ସତ୍ତା ଓ ସତ୍ୟ ଦାର୍ଶନିକମାନଙ୍କର ଏକ ଭାବୋଦ୍ଦୀପକ କଳ୍ପନା ଏବଂ ସ୍ୱପ୍ନ ମାତ୍ର । ସେ କହନ୍ତି ଏ ସଂସାରର (ଜଗତ) ଘଟଣାବଳୀ କ୍ଷଣଭଙ୍ଗୁର ଓ କ୍ଷଣସ୍ଥାୟୀ । ଏ ସଂସାର ମୋହ,ମାୟା ଏବଂ ଦୁଃଖ-ଯନ୍ତ୍ରଣାର ସଂସାର । ଏ ଜଗତ ଦୁଃଖପୂର୍ଣ୍ଣ ଏବଂ ବିପଦ ତଥା ଆଶଙ୍କା ପୂର୍ଣ୍ଣ । ଏ ଶଙ୍କା ଓ ବିପଦ ତଥା ବିଷାଦ ମନୁଷ୍ୟ ସମ୍ମୁଖରେ ସର୍ବଦା ପ୍ରତିଭାତ । ତେଣୁ ମନୁଷ୍ୟ ସବୁବେଳେ ଏସବୁ ବିପଦ, ବିଷାଦ, ଭୟ ଏବଂ ଦୁଃଖରୁ ମୁକ୍ତ ହେବାକୁ ବ୍ୟାକୁଳ । ଏହିସବୁ ବିପଦସଂକୁଳ ଦୟନୀୟ ଏବଂ ଯନ୍ତ୍ରଣାଦାୟକ ପରିସ୍ଥିତିରୁ ମୁକ୍ତି ପାଇବା ପାଇଁ ମନୁଷ୍ୟକୁ ସତତ ସଂଗ୍ରାମରତ ହେବାକୁ ପଡ଼ିବ । ଏ ସଂଗ୍ରାମ ହେବ ବୌଦ୍ଧିକତାର ସଂଗ୍ରାମ । ଏତାଦୃଶ ବୌଦ୍ଧିକ ସଂଗ୍ରାମ ବୈଜ୍ଞାନିକ ଏବଂ କାର୍ଯ୍ୟକାରୀ ପ୍ରଣାଳୀ ଦ୍ୱାରା ସମାହିତ ହେବ । ମନୁଷ୍ୟର ବିଚାର ଏବଂ ଏହାର ପ୍ରକ୍ରିୟା ବୁଦ୍ଧି ଉକ୍ତ ସଂଗ୍ରାମର ଆୟୁଧ ରୂପେ କାର୍ଯ୍ୟ କରିବେ । ଫଳତଃ ବୁଦ୍ଧିର ପ୍ରୟୋଗ ଏବଂ ବିନିଯୋଗ ପ୍ରକୃତ ମାର୍ଗରେ ହୋଇ ଜଗତରୁ ମନୁଷ୍ୟ ସମାଜକୁ ଏହି ବିପଦଜନକ ତଥା ଯନ୍ତ୍ରଣାଦାୟକ

ପରିସ୍ଥିତିରୁ ଉଦ୍ଧାର କରି ପାରିବ । ଦର୍ଶନ ଏରିଷ୍ଟୋଟଲ ଇତ୍ୟାଦିଙ୍କ ସ୍ୱପ୍ନିଳ କଳ୍ପନାବିଳାସ ହୋଇ ରହିବନାହିଁ । ଦର୍ଶନ ହେବ ମନୁଷ୍ୟର କର୍ମପୀଠ ଅର୍ଥାତ ମନୁଷ୍ୟ ଜୀବନର କର୍ମାଭିମୁଖୀ ଏକ ପ୍ରଧାନ ପ୍ରକ୍ରିୟା । କର୍ମ ଏବଂ ଚିନ୍ତା ଉଭୟର ସୁସମନ୍ୱିତ ଭାବେ କାର୍ଯ୍ୟ କରିବେ । (Thought & Practice have to be once more joined together—Page 117—History of Phil, Volume-8 Frederick Coplestone )

ଅଧ୍ୟାପକ ଡିଉଇ ସେଥିପାଇଁ ନୀତିବିଜ୍ଞାନ ଓ ସମାଜ ବିଜ୍ଞାନ ଉପରେ ବିଶେଷ ଗୁରୁତ୍ୱ ଆରୋପ କରିଛନ୍ତି । ସେ ତାଙ୍କ ତାର୍କିକ ସିଦ୍ଧାନ୍ତ ଅଧ୍ୟୟନ ପୁସ୍ତକରେ ମନୁଷ୍ୟର ସମସ୍ତ ଅନୁଭୂତିର ପରିସର ମଧ୍ୟକୁ ସମସ୍ତ ପ୍ରକାର ତତ୍ତ୍ୱୀୟ ସଂସ୍ଥାନ, ଯଥା ଧର୍ମ, ଦର୍ଶନ, ସୌନ୍ଦର୍ଯ୍ୟ ବିଜ୍ଞାନ, ନୀତିଶାସ୍ତ୍ର ଏବଂ ସର୍ବୋପରି ସମାଜ ଓ ସଂସ୍କୃତିକୁ ନେଇ ଆସିପାରିଛନ୍ତି । ଏହାର ଉଦ୍ଦେଶ୍ୟ ହେଲା ଯେ ଦର୍ଶନକୁ ଏକ ନୂତନ ତାର୍କିକ ସିଦ୍ଧାନ୍ତ ଉପରେ ଆଧାରିତ କରି ଡିଉଇ ଅତୀତର ସମସ୍ତ ଅନ୍ଧ ବିଶ୍ୱାସ ଏବଂ କୁସଂସ୍କାରକୁ ସମୂଳେ ଉତ୍ପାଟିତ କରି ଦର୍ଶନର ପୁନର୍ଗଠନ କରିବେ । ତେଣୁ F. Coplestoneଙ୍କ ମତରେ "Dewey should have com'e to say that the task of Philosophy is to clarify mans ideas as to the social & moral strifes of their own day. It is to become so far as humanly possible on organ for dealing with these conflicts, ପ୍ରକୃତରେ ଡିଉଇ ଯାହାସବୁ ସମସ୍ୟା ଉତ୍ଥାପନ କରିଛନ୍ତି, ଯାହା ସବୁ ଦାବୀ କରିଛନ୍ତି, ତାହା ହେଉଛି—"what he claims is that the true impact of Philosophical reconstruction is to be round in the development of methods for reconstructing specific problematic situation. ✻ ଏଥିରୁ ସୂଚିତ ହୁଏକି ଅଧ୍ୟାପକ ଡିଉଇ ପ୍ରୟୋଗିକ ପ୍ରଣାଳୀ ଦ୍ୱାରା ଦର୍ଶନର ପୁନର୍ଗଠନ ତଥା ଜୀବନର ସମସ୍ତ ସମସ୍ୟା ଗୁଡ଼ିକର ସମାଧାନ କରିବା ପାଇଁ ଦାବୀ କରି ଆସିଛନ୍ତି । ଡିଉଇ ଅତୀତର ସମସ୍ତ ସଂସ୍କୃତି, ସମାଜ, ପରମ୍ପରା, ଅନ୍ଧବିଶ୍ୱାସ ଓ କୁସଂସ୍କାର ଗୁଡ଼ିକୁ ପୁଙ୍ଖାନୁପୁଙ୍ଖ ଅନୁଶୀଳନ କରିଛନ୍ତି ଏବଂ ସେଗୁଡ଼ିକୁ ବୁଦ୍ଧିର ତୀକ୍ଷ୍ଣ ଧାରରେ ପରୀକ୍ଷା କରିବା ପାଇଁ ବଳିଷ୍ଠ ଯୁକ୍ତି ବାଢ଼ିଛନ୍ତି—ଯାହାଦ୍ୱାରା କି ସମାଜ ମାର୍ଜିତ, ସଂଶୋଧିତ, ବଳିଷ୍ଠ ଏବଂ ପ୍ରଗତିଶୀଳ ହୋଇପାରିବ ଏବଂ ସମାଜରେ ସୁଖ ସମୃଦ୍ଧି ତଥା ଶାନ୍ତି ପ୍ରତିଷ୍ଠିତ ହୋଇ ପାରିବ । ଏଥିପାଇଁ ସେ ଅନୁଭୂତି ଉପରେ ଆଧାରିତ ତର୍କଶାସ୍ତ୍ରର ପରୀକ୍ଷାମୂଳକ ପ୍ରଣାଳୀକୁ ଗ୍ରହଣ କରି ନେଇଛନ୍ତି ।

✻ History of Philosophy-F. Cople stone Page—119-20

## (ଖ) ଡିଉଇଙ୍କ ବିମର୍ଷୀ ଚିନ୍ତନ ଓ ତର୍କବିଜ୍ଞାନ

ଡିଉଇଙ୍କର "ଆମେ କିପରି ଭାବେ ଚିନ୍ତା କରୁ ବା ବିଚାର କରୁ" ପୁସ୍ତକଟି ପ୍ରକାଶିତ ହୁଏ ୧୯୦୯ ମସିହାରେ । ଉକ୍ତ ପୁସ୍ତକଟିରେ ଡିଉଇ କହିଛନ୍ତି ଯେ ଆମେ ଯେତେବେଳେ ସୁପ୍ତ, ସ୍ୱପ୍ନାଭିଭୂତ କିମ୍ବା ଜାଗ୍ରତ ସେତେବେଳେ ଆମର ଚେତନା ନିଷ୍କ୍ରିୟ ଅସଂଲଗ୍ନ ଏବଂ ଉଦ୍ଦେଶ୍ୟ ବିହୀନ; କିନ୍ତୁ ଯେତେବେଳେ ଆମେ କୌଣସି ଘଟଣା କିମ୍ବା ପରିସ୍ଥିତିର ସମ୍ମୁଖୀନ ; କିନ୍ତୁ ଆମେ ଯେତେବେଳେ କୌଣସି ପରିସ୍ଥିତିର ସମ୍ମୁଖୀନ ହେଉ ଏବଂ ପରିସ୍ଥିତିଟିକୁ ମନର ମନନଶକ୍ତି ଅଥବା ବୁଦ୍ଧି ଦ୍ୱାରା ବିଚାର କରୁ । ଠିକ୍ ସେତିକିବେଳେ ଆମ ସମ୍ମୁଖରେ ଉଦ୍ଭବ ହୋଇଥିବା ସମସ୍ତ ଘଟଣାବଳୀ ବା ପରିସ୍ଥିତି ପରସ୍ପର ସ୍ୱତଃ ସଂଲଗ୍ନ ଉଦ୍ଦେଶ୍ୟପୂର୍ଣ୍ଣ ଭାବରେ ଆମ ସମ୍ମୁଖରେ ପ୍ରତିଭାତ ହୁଅନ୍ତି । ସମ୍ମୁଖୀନ ପରିସ୍ଥିତିରୁ ବିମର୍ଷୀ ଚିନ୍ତନର ଆରମ୍ଭ ହୁଏ ଏବଂ ମନରେ ଏହାର ଫଳ ସ୍ୱରୂପ ତର୍କ ବାକ୍ୟର ଉଦ୍ଭବ ଘଟେ ଏବଂ ଉନ୍ନତି ହୁଏ । ଉପରୋକ୍ତ ଜୀବନାନୁଭୂତ ଦ୍ୱନ୍ଦ୍ୱାତ୍ମକ ପରିସ୍ଥିତିରୁ ତର୍କର ସୃଷ୍ଟି ହୁଏନା । ମନୁଷ୍ୟର ବିମର୍ଷୀ ଚିନ୍ତନ ବା ବିଚାରଣା ସର୍ବଦା ସ୍ୱାଧୀନ ; କିନ୍ତୁ ଏଥିରେ ପରାଧୀନତାର ସ୍ପର୍ଶ ରହିଲେ ଉକ୍ତ ବିମର୍ଷୀ ଚିନ୍ତନ ଆମକୁ ପ୍ରକୃତ ମାର୍ଗରେ ପରିଚାଳିତ କରିପାରିବ ନାହିଁ ଏବଂ ଫଳରେ ଆମେ ସମସ୍ତ ପ୍ରକାର ବିପଦ ଆଶଙ୍କା ଏବଂ ଦୁଃଖ ଯନ୍ତ୍ରଣାରୁ ଉଦ୍ଧାର ହୋଇପାରିବ ନାହିଁ । ଅଧ୍ୟାପକ ଡିଉଇଙ୍କ ମତରେ ପ୍ରୋକ୍ତ ବିମର୍ଷୀ ଚିନ୍ତନ ବା ବିଚାରର ଉଦ୍ଦେଶ୍ୟ ହେଲା ଯେ ଏହା ମନୁଷ୍ୟର ସମସ୍ତ ଜଟିଳ ସମସ୍ୟାଗୁଡ଼ିକୁ ସରଳ ଭାବେ ସମାଧାନ କରି ମନୁଷ୍ୟକୁ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ପଥରେ ଆଗେଇ ନେଇଥାଏ । ଏପରି ଏକ ଚିନ୍ତନକୁ ପ୍ରକୃତ ମାର୍ଗରେ ପରିଚାଳିତ କରିବା ପାଇଁ ଆମକୁ ପ୍ରଥମତଃ ପାଞ୍ଚଗୋଟି ଅବସ୍ଥା ଦେଇ ଗତି କରିବାକୁ ପଡ଼ିବ । ଉକ୍ତ ପାଞ୍ଚଗୋଟି ଅବସ୍ଥାକୁ ଦାର୍ଶନିକ ଡିଉଇ ଅତି ସହଜ ଏବଂ ସରଳ ଭାବରେ ନିମ୍ନଲିଖିତ ମତେ ବୁଝାଇଦେଇଛନ୍ତି ।

ସେ କହନ୍ତି ଧରିନିଆଯାଉ ଯେ ତୁମେ ଏକ ଘନ ଜଙ୍ଗଲରେ ଖୁବ୍ ଖୁସିରେ ଯାଉଛ । ହଠାତ୍ ତୁମେ ଦେଖିଲ ଯେ ତୁମ ଆଗରେ ଏକ କର୍ଦ୍ଦମାକ୍ତ ଜଳପୂର୍ଣ୍ଣ ଗାଡ଼ । ଗାଡ଼ଟିର ଦୁଇପାଖରେ ସେପରି ରାସ୍ତା ନାହିଁ । ଗାଡ଼ଟି ବଡ଼ ନ ହେଲେ ବି ଅତି ଗଭୀର ନୁହେଁ । ତୁମେ ହଠାତ୍ ସ୍ଥିର କରିନେଲ ଯେ ତୁମେ ସେ ଗାଡ଼ଟିକୁ ଖୁବ୍ ସହଜରେ ଡେଇଁଯାଇପାରିବ, କାରଣ ତୁମେ ଜଣେ ଅଭିଜ୍ଞ ଖେଳାଳୀ । ତେଣୁ ତୁମେ ଗାଡ଼ଟିକୁ ଡେଇଁପଡ଼ି ନିଜର ଗନ୍ତବ୍ୟ ପଥରେ ଚାଲିଗଲ । ଏଠାରେ ପରିସ୍ଥିତିଟି ସେତେ ଜଟିଳ ନ ହେଲେ ମଧ୍ୟ ତୁମକୁ ଅଳ୍ପ ଚିନ୍ତାକରିବାକୁ ପଡ଼ିଲା ଏବଂ ଏହି ଚିନ୍ତା ତୁମକୁ ତୁମର ଉପସ୍ଥିତ ସଙ୍କଟରୁ ଉଦ୍ଧାର କରିଦେଲା ; କିନ୍ତୁ ଧରିନିଆଯାଉ ତୁମେ ଜଣେ ଖେଳାଳୀ ନୁହଁ କିମ୍ବା ଗାଡ଼ଟି ଅତି ଗଭୀର ଏବଂ କର୍ଦ୍ଦମାକ୍ତ । ତୁମେ ତାକୁ ଡେଇଁପାରିବ ନାହିଁ କିମ୍ବା

କାଦୁଅରେ ଓ ପାଣିରେ ପଶି ତାକୁ ପାର ହୋଇପାରିବ ନାହିଁ । ଫଳରେ ତୁମେ ଆଉ ତୁମ ଗନ୍ତବ୍ୟ ପଥରେ ଯାଇ ନ ପାରି ମନଦୁଃଖରେ ପ୍ରତ୍ୟାବର୍ତ୍ତନ କରିପାର । ଡିଉଇଙ୍କ ମତରେ ଜୀବନ ଏତାଦୃଶ ସଙ୍କଟାପୂର୍ଣ୍ଣ, କାତରତାପୂର୍ଣ୍ଣ ଏବଂ ଦ୍ୱନ୍ଦ୍ୱମୟ ପରିସ୍ଥିତିରେ ପରିପୂର୍ଣ୍ଣ । ଏପରି ସବୁ ପରିସ୍ଥିତିରୁ ପରିତ୍ରାଣ ପାଇବା ପାଇଁ ଆମକୁ ସର୍ବଦା ବିମର୍ଷୀ ବିଚାରଣ ବା ଚିନ୍ତନର ସାହାଯ୍ୟ ତଥା ଆଶ୍ରୟ ନେବାକୁ ପଡ଼ିବ ; କିନ୍ତୁ ଉକ୍ତ ବିମର୍ଷୀ ବିଚାରଣ ତଥା ଚିନ୍ତନରେ ପାଞ୍ଚଗୋଟି ଅବସ୍ଥା ବା ସ୍ତର ଦେଇ ଆମକୁ ଗତି କରିବାକୁ ପଡ଼ିବ । ପ୍ରଥମତଃ ତୁମ ମନରେ ଆଉ ଏକ ବିକଳ୍ପ ଉପାୟର ଉଦ୍ରେକ ହୋଇପାରେ । ତୁମେ ଭାବିପାର ଯେ ଗାଡ଼ିଟିକୁ ତୁମେ ଡେଇଁ ଯାଇପାର କିମ୍ବା ଗାଡ଼ିଟିର କୌଣସି ପାର୍ଶ୍ୱ ଦେଇ ଚାଲି ଯାଇପାର । ନଚେତ ପାଖାପାଖି କୌଣସି ଏକ ଓଦାସିଆ କାଠଗଡ଼ ପାଇଲେ ତାକୁ ଧରି ଗାଡ଼ିଟିକୁ ଅତିକ୍ରମ କରିଯାଇପାର । ଏପରି ଭାବେ ଚିନ୍ତା କରିବା ସମୟେ ସମୟେ ଅତି ଅବାସ୍ତବ ପରି ଜଣାପଡ଼େ । ଦ୍ୱିତୀୟତଃ ତୁମେ ଉପସ୍ଥିତ ପରିସ୍ଥିତିର ସମାଧାନ ପାଇଁ ଏହାକୁ ଏକ ବୌଦ୍ଧିକ ଦୃଷ୍ଟିକୋଣରୁ ଚିନ୍ତା କରିପାର । ତୁମେ ଭାବିପାର ଯେ ଯଦି ତୁମେ ତୁମ ଗନ୍ତବ୍ୟ ସ୍ଥଳରେ ଠିକ୍ ସମୟରେ ପହଞ୍ଚି ନ ପାର, ତାହାହେଲେ ତୁମର କଣ ସବୁ କ୍ଷତି ହୋଇପାରେ । ହୁଏତ ତୁମର ବିଳମ୍ବ ହେଲେ କିମ୍ବା ତୁମେ ଆଦୌ ସେଠାକୁ ଯାଇ ନ ପାରିଲେ ତୁମର ଅପେକ୍ଷମାଣ ଅତିଥି ସତ୍କାରକ ମନ ଦୁଃଖ କରିବେ ଅଥବା ତୁମେ ଆହୁରି ଭାବିପାରିବ ଯେ କାଦୁଅ ପାଣିରେ ପଶି କର୍ଦ୍ଦମାକ୍ତ ଦେହ ଏବଂ ପୋଷାକ ଧରି ତୁମେ ସେଠାରେ କିପରି ପହଞ୍ଚିବ ? ଏପରି ଏକ ଅବସ୍ଥାରେ ତୁମେ ଚିନ୍ତାକରି ସିଦ୍ଧାନ୍ତ କଲ ଯେ, ତୁମକୁ ହିଁ ସେଠାକୁ କୌଣସିମତେ ଯିବାକୁ ପଡ଼ିବ । ଏପରି ଏକ ସିଦ୍ଧାନ୍ତ ନେଲା ପରେ ତୁମକୁ 'ବିମର୍ଷୀ ଚିନ୍ତନର' ଆଉ ଏକ ନୂତନ ଅବସ୍ଥା ବା ସ୍ତରର (ତୃତୀୟ ସ୍ତରର) ସମ୍ମୁଖୀନ ହେବାକୁ ପଡ଼ୁଛି । ଠିକ୍ ଏତିକିବେଳେ ତୁମେ ଭାବିବାକୁ ଆରମ୍ଭ କଲ ଯେ ଯଦି ନିକଟରେ କୌଣସି ନାବ କିମ୍ବା କାଠଗଡ଼ ଖଣ୍ଡେ ମିଳି ଯାଆନ୍ତା, ତାହାହେଲେ ତୁମେ ଗଡ଼ିଟିକୁ ଅନାୟାସରେ ପାରହୋଇ ଯାଇପାରନ୍ତ କିମ୍ବା ଗାଡ଼ିଟିର ପାର୍ଶ୍ୱ ଦେଇ କୌଣସି ମତେ ଅପର ପାର୍ଶ୍ୱକୁ ଚାଲି ଯାଇପାରନ୍ତ । ଏହିପରି କେତେକ ପ୍ରକଳ୍ପ ତୁମ ମନରେ ତୁମେ ସ୍ଥିର କରୁଛ—ଏହିପରି ପ୍ରକଳ୍ପ ଗୁଡ଼ିକ ଉପରେ ଚିନ୍ତା କରୁଥିବା ସମୟରେ ତୁମେ ଏଠାରୁ 'ବିମର୍ଷୀଚିନ୍ତନ'ର 'ଚତୁର୍ଥ ଅବସ୍ଥାରେ' ଉପନୀତ ହେଉଛ । ତୁମେ ତୁମର ଅତୀତର ଅନୁଭୂତି ଗୁଡ଼ିକ ବିଚାରକୁ ନେଲ । ତୁମେ ପୁଣି ବିଚାର କରୁଛ ଯେ ନିକଟରେ ଖଣ୍ଡିଏ ନାବ କିମ୍ବା କାଠଗଡ଼ ମିଳିବନି କିମ୍ବା ତୁମେ ଗାଡ଼ିଟିକୁ ଡେଇଁ ପାରିବନି ? ଏହିପରି ଚିନ୍ତା କରୁଥିବା ସମୟରେ ତୁମେ ଯାଇ 'ବିମର୍ଷୀ ଚିନ୍ତନର' 'ପଞ୍ଚମ' ଅବସ୍ଥାରେ ଉପନୀତ ହେଲ । ଅନୁଭୂତିର ଆରୋହମାନର ପରୀକ୍ଷା ଦ୍ୱାରା ତୁମେ ତୁମର ଅତି ସମ୍ଭାବ୍ୟ ପ୍ରକଳ୍ପକୁ ଗ୍ରହଣ କରି ନେଲ । ତୁମେ ସ୍ଥିର କଲ ଯେ ଗାଡ଼ିଟିକୁ ଡେଇଁଯିବ—ତୁମେ ସେହିଠାରେ ଅନ୍ୟ ଏକ ସ୍ଥାନରେ ପରୀକ୍ଷା ସ୍ୱରୂପ ଡେଇଁ ଦେଖିଲ ଯେ ତୁମେ

ଗାଡ଼ିଟିର ପାର୍ଗ ଏବଂ ପ୍ରସ୍ଥଠାରୁ ଅଧିକ ଦୂରତ୍ୱ ଡେଇଁ ପାରୁଛ—ତେଣୁ ଅବଶେଷରେ ତୁମେ ଗାଡ଼ିଟିକୁ ଡେଇଁ ଯିବାପାଇଁ ସଙ୍କଳ୍ପବଦ୍ଧ ହେଲ । ତାହାପରେ ତୁମେ ସାହସର ସହିତ ଗାଡ଼ିଟିକୁ ଡେଇଁଲ ଏବଂ ନିଜର ଗନ୍ତବ୍ୟ ପଥରେ ଅଗ୍ରସର ହେଲ । ଏହି ଅବସ୍ଥାରେ ତୁମ ସମ୍ମୁଖରେ ଆବିର୍ଭୂତ ହୋଇଥିବା ଜଟିଳ ସମସ୍ୟାଟିର ସମାଧାନ ଘଟିଲା । ବାସ୍ତବିକ ସାମାଜିକ ଜୀବନରେ ଯାବତୀୟ ଜଟିଳ ସମସ୍ୟା ଗୁଡ଼ିକର ସମାଧାନ ହୋଇଥାଏ ଏତାଦୃଶ ପାଞ୍ଚଗୋଟି ଅବସ୍ଥା ଦେଇ ଗଢ଼ିଉଠୁଥିବା 'ବିମର୍ଷୀ ଚିନ୍ତନ ବା ବିଚାରଣ' ଦ୍ୱାରା । ଜୀବନର ଯାବତୀୟ ସମସ୍ୟା ଏକପ୍ରକାର ନୁହେଁ—ପ୍ରକାର ଭେଦରେ ସ୍ଥାନ, କାଳ ଓ ପାତ୍ରକୁ ନେଇ ସେଗୁଡ଼ିକ ପରସ୍ପରଠାରୁ ଭିନ୍ନ । ଅର୍ଥାତ୍ ପରିସ୍ଥିତି ଭେଦରେ ସମସ୍ୟାଗୁଡ଼ିକରେ ସମାଧାନ କରିବାକୁ ହେଲେ ବିମର୍ଷୀ ବିଚାରଣ ବା ଚିନ୍ତନର ସାହାଯ୍ୟ ସର୍ବଦା ଅନିବାର୍ଯ୍ୟ ।

ଏତଦ୍‌ବ୍ୟତୀତ ଜୀବନର ପ୍ରତ୍ୟେକ ପରିସ୍ଥିତି ଗୁଡ଼ିକ ପରସ୍ପର ଅସାଧାରଣ ଏବଂ ମନୁଷ୍ୟର ବିଭିନ୍ନ ଅନୁଭୂତ ସର୍ବଦା ନୂତନତ୍ୱରୁ ଅସରନ୍ତ ଅନୁକ୍ରମ ମାତ୍ର । ପରନ୍ତୁ ଗାଣିତିକ ପରିସ୍ଥିତି ଗୁଡ଼ିକ ସବୁବେଳେ ନିଗମାତ୍ମକ ହୋଇଥିବାରୁ ଏହା ପ୍ରଧାନତଃ 'ବିମର୍ଷୀ ଚିନ୍ତନ'ର ଚତୁର୍ଥସ୍ତର ପ୍ରକଳ୍ପ ଦ୍ୱାରା ସମାଧାନ ହୋଇଥାଏ । ପ୍ରୟୋଗିକ ବିଜ୍ଞାନର ସମସ୍ୟା ଗୁଡ଼ିକ ମଧ୍ୟ 'ବିମର୍ଷୀ ଚିନ୍ତନ'ର ତୃତୀୟ ଏବଂ ପଞ୍ଚମ ସ୍ତରଠାରେ ସମାଧାନ ହୋଇଥାଏ । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ଜୀବନର ଯେ କୌଣସି ପରିସ୍ଥିତି 'ବିମର୍ଷୀ ଚିନ୍ତନ'ର ଅନୁକ୍ରମିକ ଗତିରେ ସମାଧାନ ହୋଇଥାଏ । ଜୀବନର ବିଭିନ୍ନ ପରିସ୍ଥିତିର ସମାଧାନ ପାଇଁ 'ବିମର୍ଷୀ ଚିନ୍ତନ'ର ବିଭିନ୍ନ ସ୍ତର ବିନାନୁକ୍ରମିକ ଗତିରେ ଗଢ଼ିଉଠି ପାରେ । ପରିଶେଷରେ ଏତିକି କୁହାଯାଇ ପାରେ ଯେ ଜନ୍‌ଙ୍କର ଡିଉଇଙ୍କ ଦ୍ୱାରା ପ୍ରଣୀତ **"How we think"** ପୁସ୍ତକଟି 'ବିମର୍ଷୀ ଚିନ୍ତନ'ର ଏକ ତାତ୍ତ୍ୱିକ ଏବଂ ବୌଦ୍ଧିକ ପର୍ଯ୍ୟାଲୋଚନା ମାତ୍ର । ଏହି ପର୍ଯ୍ୟାଲୋଚନା ପ୍ରଧାନତଃ ଶିକ୍ଷା ସମ୍ବନ୍ଧୀୟ ସମସ୍ତ ସମସ୍ୟା, ପରିସ୍ଥିତି ଏବଂ ଘଟଣାବଳୀକୁ କେନ୍ଦ୍ରବିନ୍ଦୁ କରି ଗଢ଼ି ଉଠିବା ସଙ୍ଗେ ସଙ୍ଗେ ଅଧ୍ୟାପକ ଡିଉଇଙ୍କ କରଣବାଦ ବା ସାଧନବାଦର ଏକ ନିଚ୍ଛକ ଉଦାହରଣ ହୋଇ ରହିଛି ।

## (ଗ) "ଡିଉଇଙ୍କ ତର୍କଶାସ୍ତ୍ର-ଏକ ଅନୁସନ୍ଧାନ ସିଦ୍ଧାନ୍ତ"

### ( ଡିଉଇଙ୍କ ତର୍କଶାସ୍ତ୍ରର ବିଷୟ ବସ୍ତୁ )

ଅଧ୍ୟାପକ ଡିଉଇଙ୍କ 'ତର୍କଶାସ୍ତ୍ର, ଏକ ଅନୁସନ୍ଧାନ ସିଦ୍ଧାନ୍ତ' ପୁସ୍ତକଟି ବୋଧହୁଏ ତାଙ୍କର ସବୁଠାରୁ ଶ୍ରେଷ୍ଠ କୃତ ଏବଂ ଅବଦାନ । ଡିଉଇଙ୍କ ମତରେ 'ତର୍କଶାସ୍ତ୍ର' ହେଉଛି 'ବିମର୍ଷୀ ବିଚାର ତଥା ଚିନ୍ତନର' ଏକ ତାତ୍ତ୍ୱିକ ଅନ୍ୱେଷଣ । ହେଗଲଙ୍କପରି ଡିଉଇଙ୍କ ଦର୍ଶନରେ ଏକ ଧାରାବାହିକ ତଥା ନିରବଚ୍ଛିନ୍ନ ପରିପ୍ରକାଶ ସୁସ୍ପଷ୍ଟ । ଡିଉଇଙ୍କର

ଅନୁଭୂତବାଦ ଅପେକ୍ଷା ଆମେ ଯଦି ତାଙ୍କର ପ୍ରକୃତବାଦ ତଥା ଭୌତିକବାଦ ପ୍ରତି ବେଶୀ ଦୃଷ୍ଟି ଦେବା, ତାହା ହେଲେ ଡ଼ିଉଇ ବୋଧହୁଏ ନିଜକୁ ବେଶୀ ଗୌରବାନ୍ୱିତ ମନେ କରିବେ । କାରଣ ଡ଼ିଉଇଙ୍କ ସାଧନମାର୍ଗ ଏବଂ ପ୍ରୟୋଗବାଦୀ ତର୍କଶାସ୍ତ୍ର ପ୍ରଧାନତଃ ପ୍ରକୃତବାଦୀ ତଥା ଭୌତିକବାଦୀ ତର୍କଶାସ୍ତ୍ର । ତାଙ୍କର ତର୍କଶାସ୍ତ୍ର ଅନ୍ୟ ଏକ ପାରମାର୍ଥିକ କିମ୍ବା ଅନ୍ତ୍ରଗଣିତ ଜଗତ ପାଇଁ ଉଦ୍ଦିଷ୍ଟ ନ ହୋଇ ଏହା ଏହି ଭୌତିକ ଜଗତ ତଥା ଦୃଶ୍ୟମାନ ଜଗତାର୍ଥେ ଅଭିପ୍ରେତ । ତେଣୁ ଡ଼ିଉଇଙ୍କର ତତ୍ତ୍ୱ ମୀମାଂସା ତାଙ୍କର ତାର୍କିକ ସିଦ୍ଧାନ୍ତ ଉପରେ ପର୍ଯ୍ୟବସିତ ଏବଂ ଏହା ପୂର୍ବାନୁଚିନ୍ତିତ ପ୍ରତ୍ୟୟବାଦ ବା ଆଧ୍ୟାତ୍ମବାଦ ବିରୁଦ୍ଧରେ ଏକ ବିଦ୍ରୋହ ଘୋଷଣା ମାତ୍ର । ତଥାପି **Donald Platt** ଇତ୍ୟାଦି ଡ଼ିଉଇଙ୍କୁ ତାଙ୍କ ହେଗେଲୀୟ ଦୃଷ୍ଟିକୋଣ ଯୋଗୁଁ ଜଣେ ପ୍ରତ୍ୟୟବାଦୀ ଦାର୍ଶନିକ ବୋଲି ଦାବୀ କରି ଆସିଛନ୍ତି, କିନ୍ତୁ ଏ ଶଙ୍କାକୁଳ ବିପଦପୂର୍ଣ୍ଣ କାତରତାପୂର୍ଣ୍ଣ ତଥା ଦୟନୀୟ ଦୁନିଆଁର ସମସ୍ତ ଯନ୍ତ୍ରଣାଦାୟକ ପରିସ୍ଥିତି ଗୁଡ଼ିକର ସମାଧାନ ପାଇଁ ସେ ଅର୍ଥକ୍ରିୟାବାଦୀ ପ୍ରତ୍ୟୟବାଦ ସ୍ଥାପନା କରିଥିଲେ ମଧ୍ୟ ତାହା ତାଙ୍କର ଅର୍ଥକ୍ରିୟାବାଦୀ ବାସ୍ତବବାଦ ତଥା ଭୌତିକବାଦ ଉପରେ ଆଧାରିତ ।

ଡ଼ିଉଇଙ୍କ ଦର୍ଶନର ଆରମ୍ଭ ଏବଂ ଶେଷ ହୁଏ ଯେ ତାଙ୍କର ତାର୍କିକ ସିଦ୍ଧାନ୍ତକୁ ଏକ ଅନୁସନ୍ଧାନର ପ୍ରଣାଳୀ ରୂପେ ଗ୍ରହଣ କରିନେବାରେ, ବାସ୍ତବିକ ଡ଼ିଉଇ କହନ୍ତି ଯେ ଶରୀର ଏବଂ ବୁଦ୍ଧିର କ୍ରିୟାଶୀଳତା ଉପରେ ତର୍କଶାସ୍ତ୍ରର ବିଷୟବସ୍ତୁ ନିର୍ଭର କରେ । ଏହି କ୍ରିୟାଶୀଳତା ବହିର୍ଜଗତର ବିଭିନ୍ନବସ୍ତୁ ଏବଂ ଘଟଣାର ପ୍ରବାହକୁ ନେଇ ସୃଷ୍ଟି ହୋଇଥାଏ । ତାଙ୍କ ମତରେ ପ୍ରଥମତଃ ତାର୍କିକ ଆକାରଗୁଡ଼ିକ ସବୁବେଳେ ଅଭ୍ୟୁପଗମନୀୟ । ଏପରିକି ତଦାତ୍ମନିୟମ ଏବଂ ବିରୋଧ ନିୟମ ଯଥା 'କ' କେବଳ 'କ' ଅଟେ **(A is A)** ଏବଂ 'କ' ଉଭୟତଃ 'ଖ' ଏବଂ 'ଗ' ଏବଂ 'ଖ' ବ୍ୟତୀତ ଅନ୍ୟ କିଛି ହୋଇ ପାରିବ ନାହିଁ । ପ୍ରକୃତରେ କାଣ୍ଟିସୀୟାନ ଅର୍ଥରେ ଅଭ୍ୟୁପଗମ ଗୁଡ଼ିକ ମନରେ ଅନୁଭବ ନିରପେକ୍ଷ ଆକାର ନୁହନ୍ତି କିମ୍ବା ସାର୍ବଜନୀନ ତଥା ସାମାନ୍ୟ ନିୟମାବଳୀ ନୁହନ୍ତି । ଡ଼ିଉଇଙ୍କ ମତରେ ବରଂ ସେଗୁଡ଼ିକ ବ୍ୟବସାୟର ନିୟମାବଳୀ । ସଦୃଶ, ଯାହାଙ୍କ ଅନ୍ତରରେ ଲାଭ-କ୍ଷତି ଏବଂ ଭଲ-ମନ୍ଦର ବିଶ୍ୱାସ ଉପରେ ପ୍ରତିଷ୍ଠିତ । ଉକ୍ତ ଅଭ୍ୟୁପଗମ ଗୁଡ଼ିକ ତାର୍କିକ ଅନୁସନ୍ଧାନ ମାଧ୍ୟମରେ ସ୍ୱତଃ ସୃଷ୍ଟି ହୋଇଥାଏ । ଏହି ଅଭ୍ୟୁପଗମ ଗୁଡ଼ିକ ମଧ୍ୟ କାଳକ୍ରମେ ସେମାନଙ୍କର ବ୍ୟାବହାରିକତା ତଥା କାର୍ଯ୍ୟକାରିତା ଦୃଷ୍ଟିରୁ ପରିବର୍ତ୍ତିତ ହୋଇଯିବା ସ୍ୱାଭାବିକ ।

ଦ୍ୱିତୀୟତଃ, ଡ଼ିଉଇଙ୍କର ବିଚାର ଇନ୍ଦ୍ରିୟାନୁଭବ, ପ୍ରକୃତିବାଦ ତଥା ବସ୍ତୁବାଦ ଉପରେ ନିର୍ଭର କରୁଥିବାରୁ ତାଙ୍କୁ ଜଣେ ଇନ୍ଦ୍ରିୟାନୁଭବୀ ତଥା ପ୍ରକୃତିବାଦୀ ଦାର୍ଶନିକ ରୂପେ ଗ୍ରହଣ କରି ନିଆଯାଏ । [illegible] ପ୍ରକୃତିବାଦୀ ଅର୍ଥ କ୍ରିୟାବାଦ ସହିତ 'ବସ୍ତୁ'

ଏବଂ 'ବୁଦ୍ଧି' ଓତଃପ୍ରୋତ ଭାବେ ଜଡ଼ିତ ଥିବାରୁ ଏବଂ ଏଥିରେ ବୁଦ୍ଧିର ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିବାରୁ ଡିଉଇଙ୍କୁ ଜଣେ ତର୍କବୁଦ୍ଧିବାଦୀ କହିଲେ ଅଯୁକ୍ତ ହେବ ନାହିଁ ।

ତୃତୀୟତଃ ଡିଉଇଙ୍କର ଦର୍ଶନଶାସ୍ତ୍ର ପ୍ରଧାନତଃ ପ୍ରକୃତିବାଦୀ ଦର୍ଶନଶାସ୍ତ୍ର । କାରଣ ତାଙ୍କ ଦର୍ଶନଶାସ୍ତ୍ର କେବଳ ପ୍ରାଣୀ ଜଗତ ଏବଂ ଉଦ୍ଭିଦ ଜଗତରେ ସୃଷ୍ଟି ସମୃଦ୍ଧି ଏବଂ ପ୍ରଗତି ପାଇଁ ଅଛି ଯେତେ । ଏସବୁକୁ ଆଖି ଆଗରେ ରଖି ଡକ୍ଟର ଡିଉଇ ଦର୍ଶନର ପୁନର୍ଗଠନ କାମନା କରିଛନ୍ତି ।

ଚତୁର୍ଥତଃ, ଡିଉଇ ଦର୍ଶନଶାସ୍ତ୍ରକୁ ଏକ ସାମାଜିକ ଶୃଙ୍ଖଳା ରୂପେ ଅଭିହିତ କରିଛନ୍ତି; କାରଣ ତାଙ୍କର ସମୁଦାୟ ଦର୍ଶନ ମନୁଷ୍ୟ ସମାଜକୁ ପୁନର୍ଗଠନ କରିବା ନିମନ୍ତେ ଉଦ୍ଦିଷ୍ଟ । ତେଣୁ ଅଧ୍ୟାପକ ଡିଉଇ ଦର୍ଶନକୁ ଏକ ବ୍ୟାବହାରିକ ସମାଜ ବିଜ୍ଞାନ ରୂପେ ଘୋଷଣା କରି ଆସିଛନ୍ତି ।

ଶେଷତଃ, ଡିଉଇଙ୍କ ଦର୍ଶନଶାସ୍ତ୍ର ସର୍ବଦା ସ୍ୱାତନ୍ତ୍ର୍ୟ ଅଟେ । ଏହା ତତ୍ତ୍ୱ ମୀମାଂସା, ମନସ୍ତତ୍ତ୍ୱ ଏବଂ ଯେ କୌଣସି ତତ୍ତ୍ୱଗୁଡ଼ିକର ନିୟମାବଳୀର ଆୟତ୍ତାଧୀନ ନୁହେଁ । ଏହା ବରଂ ସବୁ କ୍ଷେତ୍ରରେ ବ୍ୟବହୃତ ହୋଇ ଆସୁଥିବା ଅନୁସନ୍ଧାନର ପ୍ରଣାଳୀ ଗୁଡ଼ିକୁ ଜାଣିବା ପାଇଁ ସବୁବେଳେ ଉଦ୍ୟମ କରିଥାଏ ଏବଂ ସେଇ ଅବସରରେ ନୂତନ ପ୍ରକାର ଅନୁସନ୍ଧାନ ପଦ୍ଧତିର ସୂଚନା ଦେଇଥାଏ । ତେଣୁ ଡିଉଇଙ୍କ ଦର୍ଶନଶାସ୍ତ୍ରକୁ କେତେକ 'ଅନୁସନ୍ଧାନର ଅନୁସନ୍ଧାନ ବୋଲି ସମାଲୋଚନା କରିଥାନ୍ତି **(It is an enquiry into enquiry) (i) ***

ଉପରୋକ୍ତ ବିଷୟବସ୍ତୁ ତଥା ସମସ୍ୟା ଗୁଡ଼ିକ ଡିଉଇଙ୍କ ଦର୍ଶନଶାସ୍ତ୍ରର ପରିସର ଭୁକ୍ତ । ପ୍ରୋକ୍ତ ଆଲୋଚନା ତଥା ବିଷୟବସ୍ତୁ ଗୁଡ଼ିକରୁ ଏତିକି ସ୍ପଷ୍ଟ ଭାବେ ଅନୁମିତ ହୁଏ ଯେ ଡିଉଇଙ୍କ ପ୍ରକ୍ରିୟାବାଦ କିମ୍ବା କରଣବାଦ ତଥା ସାଧନବାଦ ଜେମ୍ସଙ୍କର ଅର୍ଥକ୍ରିୟାବାଦର ଦୋଷ ଦୁର୍ବଳତାର ବହୁ ଊର୍ଦ୍ଧ୍ୱରେ ।

---

* (i) History of Hhil-by W. K. W Page-543
(William Kelley Wright)

## (ଘ) ଡିଉଇଙ୍କ ତର୍କଶାସ୍ତ୍ରର ଦତ୍ତସାମଗ୍ରୀ ଅର୍ଥ ଏବଂ ଜ୍ଞାନ ବିଷୟ

ମନୁଷ୍ୟର ପ୍ରାକ୍‌ବିମର୍ଶୀ ବିଚରଣ ସମୟରୁ ପ୍ରକୃତି ଓ ତାର ଘଟଣାବଳୀ ବିଦ୍ୟମାନ ରହିଆସିଅଛି । ପ୍ରକୃତି ଏବଂ ତାର ଘଟଣାବଳି ଯେତେବେଳେ ବ୍ୟକ୍ତି ଉପରେ ସେମାନଙ୍କର ପ୍ରଭାବ ବିସ୍ତାର କରନ୍ତି, ଠିକ୍ ସେତେବେଳେ ବ୍ୟକ୍ତି ଜୀବନପ୍ରାନ୍ତରେ ପ୍ରତିକ୍ରିୟା ସୃଷ୍ଟି କରି ପରିସ୍ଥିତିର ମୁକାବିଲା କରିବାକୁ । ଏହି ମୁକାବିଲା କରିବାର ଅବସର ମଧ୍ୟରେ, ପ୍ରକୃତି ବ୍ୟକ୍ତିର ଅନୁସନ୍ଧାନ ପରିସର ଭିତରକୁ ଚାଲିଆସେ । ଉକ୍ତ ମୁକାବିଲା ତଥା ଅନ୍ୟୋନ୍ୟ କ୍ରିୟାରୁ ତର୍କଶାସ୍ତ୍ରର 'ଦତ୍ତସାମଗ୍ରୀ' ସେମାନଙ୍କର ଅର୍ଥନ୍ୟାସ ଏବଂ ଜ୍ଞାନର ଉଦ୍ଭବ ଘଟେ ।

ବର୍ତ୍ତମାନ ପ୍ରକୃତିର ଦତ୍ତସାମଗ୍ରୀ ତଥା ତାହାଗୁଡ଼ିକର କାର୍ଯ୍ୟ କଥା ବିଚାରକୁ ନିଆଯାଉ । ଆମେ ଜାଣୁ ଯେ, 'ଡାଟା' ହେଉଛି ଦତ୍ତ ଥାଏ । ଏହା କୌଣସି ମାନସିକ କିମ୍ବା ତାର୍କିକ ପ୍ରତିବନ୍ଧନ ହୋଇପାରେ କିମ୍ବା କୌଣସି ଏକ 'ସ୍ଥିତିଗତବାହ୍ୟ ଘଟଣା' ହୋଇପାରେ । ପଣ୍ଡିତ ଡିଉଇଙ୍କ ମତରେ ଗୋଟିଏ ସାମଗ୍ରୀ ପ୍ରକୃତିରେ ଦତ୍ତ ନ ଥାଏ । ବରଂ ଏହା ପ୍ରକୃତିରୁ ଆନୀତ, ନିର୍ବାଚିତ ପ୍ରେକ୍ଷିତ ଏବଂ ବିଭେଦୀକୃତ ଏକ ଘଟଣା, ଯାହାକି 'ଅନୁମାନ' ପାଇଁ ଅଭିପ୍ରେତ ଅଟେ । ଯାହା ଦତ୍ତ, ତାହା ଏକ ପ୍ରତ୍ୟକ୍ଷମାନ ପରିସ୍ଥିତି । ଯାହା ଆନୀତ କିମ୍ବା ନିର୍ବାଚିତ ତାହା ଏକ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟପୂର୍ଣ୍ଣ ଅନୁସନ୍ଧାନ ପାଇଁ ଉଦ୍ଦିଷ୍ଟ । କାରଣ ଉଦ୍ଦେଶ୍ୟଗୁଡ଼ିକ ପ୍ରକାରଭେଦରେ ସର୍ବଦା 'ବସ୍ତୁ' ହୋଇପାରନ୍ତି । ତେଣୁ Datumଟି (ସାମଗ୍ରୀଟି) ହେଉଛି ଏକ ଘଟଣାର ପ୍ରତୀକ । ଏହି ପ୍ରତୀକର ଅର୍ଥ ଏବଂ ପରିଣାମ 'ବିଚାର' ସମ୍ପର୍କରେ ଏକ ଅନିଶ୍ଚିତ ଘଟଣା ହୋଇ ରହିଥାଏ । କିନ୍ତୁ ଉଇଲିୟମ ଜେମ୍‌ସ କହନ୍ତି ଆମେ ଯଦି ଗୋଟିଏ ଖୁଣ୍ଟା ବୃକ୍ଷ ଦେଖୁ, ତାହା ନିଶ୍ଚିତଭାବେ ଏକ ଖୁଣ୍ଟା ବୃକ୍ଷ ବୋଲି ଧରନେଉ । କାରଣ ତାହା ଆମ ସମ୍ମୁଖରେ ଦତ୍ତ ଅଛି ତଥାପି ଖୁଣ୍ଟା ବୃକ୍ଷଟି ଯଦି କେହି ଭୂତ ବୋଲି ଭାବେ ସେଥିରେ ଖୁଣ୍ଟା ବୃକ୍ଷଟିର କିଛି ଯାଏଆସେ ନାହିଁ ; କିନ୍ତୁ ଅଧ୍ୟାପକ ଡିଉଇ କହନ୍ତି ଉକ୍ତ ଖୁଣ୍ଟା ବୃକ୍ଷଟିକୁ ସିଏ ଯେପରି ଭାବେ ଦେଖୁଛନ୍ତି, ତାହା ଠିକ୍ ସେହିପରି ଭାବେ ତାଙ୍କ ସମ୍ମୁଖରେ ଏକ 'ଦତ୍ତ ସାମଗ୍ରୀ' ରୂପେ ପ୍ରତିଭାତ ହୁଏ । ତେଣୁ ଅର୍ଥକ୍ରିୟାବାଦୀମାନେ ଏତାଦୃଶ ଏକ ଦତ୍ତ ସାମଗ୍ରୀର ପୁନର୍ଗଠନ କରିବାକୁ ଆବଶ୍ୟକ ମନେକରନ୍ତି । ଡିଉଇ କହନ୍ତି ଏଥିପାଇଁ ଆମକୁ ଆଗମନ କିମ୍ବା ନିଗମନ ତର୍କର ସାହାଯ୍ୟ ନେବାକୁ ପଡ଼େ । ଏହି ନିଗମନ ଏବଂ ଆଗମନ (ଅବରୋହ ଏବଂ ଆରୋହ) ତର୍କ ଜ୍ଞାନ ମାଧ୍ୟମରେ ଆମେ ଏକ 'ଅବଧାରଣା' (ନିର୍ଣ୍ଣୟ) ସ୍ଥିର କରୁ ଯାହାର ଉଦ୍ଦେଶ୍ୟ ଓ ବିଧେୟ ଦତ୍ତସାମଗ୍ରୀ ଦ୍ୱାରା ନିର୍ଦ୍ଧାରିତ ଭାବେ ଜାଣି ହୁଏ । ଏହା କେବଳ ପରିସ୍ଥିତିଟିକୁ ଯେ ସମାଧାନ କରେ ତାହା ନୁହେଁ ଏକ ଏକ ବାସ୍ତବ

ପ୍ରତୀକର ସଙ୍କେତଦେବା ସଙ୍ଗେ ସଙ୍ଗେ ବାସ୍ତବ ଘଟଣାଟିର ଗୁରୁତ୍ୱକୁ ସମ୍ପୂର୍ଣ୍ଣ ଭାବେ ନିରୂପିତ କରିଥାଏ । ଏପରି ଏକ 'ଅବଧାରଣ' ତଥା 'ନିର୍ଣ୍ଣୟର' ସଯୋଜକ ଏକ ସାଧାରଣ ତର୍କବାକ୍ୟ ବା ବିବୃତିର ସଯୋଜକ ନୁହେଁ ବରଂ ଏହା ଏକ ସଂଶ୍ଳେଷାତ୍ମକ ଅବଧାରଣର ସଂଯୋଜକ ଅଟେ । ଅବଶେଷରେ ଏତିକି କୁହାଯାଇପାରେ ଯେ, ଅନୁସନ୍ଧାନର ଲକ୍ଷ୍ୟ ହିଁ ଜ୍ଞାନ ବିଷୟ ଯାହାକି ଅଧିକ ଅନୁସନ୍ଧାନର ଅପେକ୍ଷା ରଖେ । ଉଦାହରଣ ସ୍ୱରୂପ, ପ୍ରତ୍ୟକ୍ଷ ଜ୍ଞାନରୁ ଆମେ ଜାଣୁ ଯେ ବର୍ଷାର ଅନୁମାନ ମେଘଖଣ୍ଡରୁ ମିଳିଥାଏ, ଯେପରି ଅଗ୍ନିର ଅନୁମାନ ଧୂମରୁ କରି ହୁଏ । ଏହା ଗୋଟିଏ ଗୋଟିଏ ପ୍ରାକୃତିକ ଘଟଣା ବା ପରିସ୍ଥିତି । ଏହି ପ୍ରତ୍ୟକ୍ଷାନୁଭୂତ ପରିସ୍ଥିତିଟି ଦିବ୍ୟେନ୍ଦ୍ରିୟ-ସାମଗ୍ରୀର କାରଣ ମାତ୍ର । ଏଠାରେ ମେଘଖଣ୍ଡମାନ ଏବଂ ଧୂମ ହେଉଛନ୍ତି ବର୍ଷା ବା ଅଗ୍ନିର ପ୍ରତୀକବୃତ ଅର୍ଥ ସୂଚକ ଅର୍ଥାତ୍ ଯଥାକ୍ରମେ ମେଘଖଣ୍ଡମାନଙ୍କର ଏବଂ ଧୂମର ଉପସ୍ଥିତିର ଅର୍ଥ ବର୍ଷା ଏବଂ ଅଗ୍ନିର ଉପସ୍ଥିତିକୁ ବୁଝାଉଅଛି । ଏହା ଏକ ଅନୁଭୂତ ତଥା 'ଅଭ୍ୟାସ'ର ବିଷୟବସ୍ତୁ । ଏଥିରୁ ସ୍ପଷ୍ଟ ହୁଏ ଯେ ଅର୍ଥବୋଧ-ମୂଳତଃ ମାନସିକ ନ ହୋଇ ଦ୍ରବ୍ୟ ବା ପ୍ରକୃତିର ଘଟଣାଗୁଡ଼ିକରେ ଥାଏ । ଡିଉଇଙ୍କ ମତରେ ଅନୁସନ୍ଧାନ କେବଳ ସମ୍ଭବ ହୁଏ ତର୍କଶାସ୍ତ୍ରର ଦତ୍ତସାମଗ୍ରୀ ଏବଂ ଅର୍ଥବୋଧର ପାରସ୍ପରିକ ପ୍ରକ୍ରିୟା ମାଧ୍ୟମରେ । ଗୋଟିଏ ଦୃଷ୍ଟିରୁ ପ୍ରକୃତିରେ ସଙ୍ଗଠିତ ହେଉଥିବା ଅର୍ଥର ସୃଷ୍ଟି ଏବଂ ଅନ୍ୟ ଏକ ଦୃଷ୍ଟିରେ ଅର୍ଥବୋଧ ଈଶ୍ୱର ବା ଚିନ୍ତା ପ୍ରସୂତ । ଏଥିରୁ ସ୍ପଷ୍ଟଭାବେ ବୁଝିବାକୁ ହେବ ଯେ ଅର୍ଥ ଦୁଇପ୍ରକାର—ଗୋଟିଏ 'ଘଟଣାସୃଷ୍ଟ' ଅର୍ଥ ଏବଂ ଅନ୍ୟଟି 'ଈଶ୍ୱର ସୃଷ୍ଟ ଅର୍ଥ' । ତେଣୁ ପ୍ରଥମ ଅର୍ଥରେ ଆମେ କହିପାରୁ ଯେ, ଧୂମ ଦର୍ଶନ ଅର୍ଥ ଅଗ୍ନି ଦର୍ଶନ ଏବଂ ଦ୍ୱିତୀୟ ଅର୍ଥରେ ଆମେ କହିପାରୁ ଯେ ଧୂମର ଧାରଣା ଅଗ୍ନିର ଧାରଣାକୁ ବୁଝାଏ । * ପ୍ରଥମ ଅର୍ଥରେ ଗୋଟିଏ ଘଟଣା ଅନ୍ୟ ଏକ ଘଟଣାର ଆଶା କିମ୍ବା ଅପେକ୍ଷା ରଖେ ଏବଂ ଦ୍ୱିତୀୟ ଅର୍ଥରେ ଗୋଟିଏ ଧାରଣା ଅନ୍ୟ ଏକ ଧାରଣାର ଉପସ୍ଥିତିକୁ ନିର୍ଦ୍ଦିଷ୍ଟ ଭାବେ ସୂଚାଇ ଦିଏ, ଅର୍ଥାତ୍ ପଣ୍ଡିତ ଡିଉଇଙ୍କ ମତରେ ପ୍ରଥମଟି ହେଲା ଅର୍ଥ ବୋଧସୂଚକ ଏବଂ ଦ୍ୱିତୀୟଟି ହେଲା ପ୍ରତୀକ-ଅର୍ଥ । ତେଣୁ ପ୍ରଥମ ଅର୍ଥଟି ଅନୁମାନର ସଂଜ୍ଞା ନିରୂପିତ କରେ ଏବଂ ଦ୍ୱିତୀୟ ଅର୍ଥଟି ଆପଦନର ପରିଭାଷା ବା ସଂଜ୍ଞା ଦେଇଥାଏ । ଉପରେ ଦୁଇଟି ଅର୍ଥର ପ୍ରକୃତି ଓ ପ୍ରକାର ବର୍ଣ୍ଣିତ ହେଲ; କିନ୍ତୁ ସେଗୁଡ଼ିକ ସମ୍ପୂର୍ଣ୍ଣ ନୁହନ୍ତି । ଅର୍ଥାତ୍ କେତେକ ଅର୍ଥ ବାହ୍ୟ ଘଟଣାର ଅନ୍ତରଙ୍ଗ ଅଟନ୍ତି । ଉପରୋକ୍ତ ଅର୍ଥ ଦ୍ୱୟର ପ୍ରାକ୍‌କାଳରୁ ଅଗ୍ନି ଏବଂ ଧୂମ ଯେ ପରସ୍ପର ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ ଏକଥା ଆମେ ପୂର୍ବରୁ ଜାଣିଥାଉଁ । ଏହାକୁ ଅନ୍ତରଙ୍ଗ ଅର୍ଥ କହନ୍ତି ।

* (i) Phil, of J. D.—Fddıtd by P. A. Schılpp —Page-121

ଦ୍ୱିତୀୟତଃ ଆମେ ଅନୁମାନର ଲକ୍ଷଣ—ପ୍ରତୀକ ସମ୍ପର୍କ ଅର୍ଥ ସମ୍ବନ୍ଧରେକହି ରଖିଛୁ ; କିନ୍ତୁ Donald A. Plattଙ୍କ ମତରେ ଏହାକୁ ଲାକ୍ଷଣିକ ପ୍ରତୀକାର୍ଥ ନ କହି ବରଂ ସୂଚନାତ୍ମକ ଅର୍ଥ କହିବା ଅଧିକ ଯୁକ୍ତିଯୁକ୍ତ ହେବ । କାରଣ ଏହା ସମ୍ପୂର୍ଣ୍ଣ ଭାବେ ବହିରଂଗୀ କିମ୍ବା ସାଧନମାର୍ଗୀ । ଡିଉଇଙ୍କ ମତରେ ତର୍କ ବୃତ୍ତିର ଶକ୍ତି ଭାଷାର ଶକ୍ତି ମଧ୍ୟରେ ଲୁକ୍କାୟିତ । କାରଣ ଭାଷା ହିଁ ଏକ ବାସ୍ତବ—ପ୍ରତୀକକୁ ଅନ୍ୟ ଏକ ଅର୍ଥ ପୂର୍ଣ୍ଣ—ପ୍ରତୀକରେ ପରିଣତ କରିଥାଏ ।

## (ଙ) ଡିଉଇଙ୍କ 'ସତ' ଏବଂ ଜ୍ଞାନ ମୀମାଂସା

ମନୀଷୀ ବାର୍ଟ୍ରାଣ୍ଡ ରସେଲଙ୍କ ମତରେ ଡିଉଇଙ୍କ ତର୍କଶାସ୍ତ୍ରର ବିଶେଷତ୍ୱ ହେଉଛି ଯେ 'ସତ୍ୟ' କିମ୍ବା 'ଜ୍ଞାନ' ଉପରେ ଗୁରୁତ୍ୱ ନ ଦେଇ କେବଳ ତାର୍କିକ ଅନୁସନ୍ଧାନ ଉପରେ ଗୁରୁତ୍ୱ ଆରୋପ କରିବା । ତେଣୁ ସେ କହନ୍ତି "I came now to what is most distinctive in Dr Dewey s Logic, namely the emphasis upon enquiry as opposed to truth or knowledge ତାର୍କିକ ଅନୁସନ୍ଧାନ ସତ୍ୟର ସନ୍ଧାନ ନୁହେଁ ବରଂ ଏହା ଏକ ସ୍ୱାଧୀନ ପ୍ରକ୍ରିୟା । ରସେଲ କହନ୍ତି "Enquiry is not for him, as for most Philosophers a search for truth, it is an independent activity defined as follows by Dewey himself (Philosophy of John Dewey edited by P. A Schilpp—Page-45) କିନ୍ତୁ ଅଧ୍ୟାପକ ଡିଉଇ ତାର୍କିକ ଅନୁସନ୍ଧାନର ନିମ୍ନଲିଖିତ ସଂଜ୍ଞା ନିର୍ଦ୍ଧାରଣ କରିଯାଇଛନ୍ତି । ଡିଉଇଙ୍କ ମତରେ, "Enquiry is the controlled or directed transformation of an indeterminate situation into one that is so determinate in its constituent destinctions and relations as to convert the elements of the original situation into a unified whole ✻ (1) ଡିଉଇ କହନ୍ତି ପ୍ରାଚୀନ ଗ୍ରୀକ୍ ସଭ୍ୟତା ଓ ସଂସ୍କୃତିକୁ ଲକ୍ଷ୍ୟକରି ଆରିଷ୍ଟଟଲ ଯଦି ତାଙ୍କର ତର୍କଶାସ୍ତ୍ରକୁ ଏହିପରି ଉଦ୍ଦେଶ୍ୟରେ ପ୍ରଣୋଦିତ କରିଥାନ୍ତି, ତାହାହେଲେ ସେଥିପାଇଁ ସେ ପ୍ରଶଂସନୀୟ ; କିନ୍ତୁ ସେ କାଳରେ ଯାହା କିଛି ଚିରନ୍ତନ ଏବଂ ଶାଶ୍ୱତ ବୋଲି ପରିଗଣିତ ହେଉଥିଲା, ଆଜି ତାହା ପ୍ରାୟ ପରିତ୍ୟକ୍ତ । ସେକାଳ ଏବଂ ଏକାଳ ମଧ୍ୟରେ ଆଜି ବହୁ ଆକାଶ ପାତାଳ ପ୍ରଭେଦ ଘଟିଗଲାଣି ।

✻ (1) History of Phil-(Part-II) Volume-8
by F Coplestone—Page-121

ତେଣୁ ଆମେ ଆଜି ଅତୀତ ଓ ବର୍ତ୍ତମାନର ଏକ ସମନ୍ୱୟ ସୃଷ୍ଟି । ଏଥିପାଇଁ ଆମକୁ ଏକ ସୁସମନ୍ୱିତ ଅନୁସନ୍ଧାନର ପଦ୍ଧତିକୁ ମାନନେବାକୁ ପଡ଼ିବ । ଯାହାକି ଆଜି ଏକ ପ୍ରୟୋଗାତ୍ମକ ଏବଂ କାର୍ଯ୍ୟକାରୀ ପ୍ରଣାଳୀ ରୂପେ ଏକା ବିଜ୍ଞାନ କାହିଁକି ଜୀବନର ସମସ୍ତ ଅନୁଭୂତ ଲବ୍ଧଜ୍ଞାନ ପ୍ରତି ମଧ୍ୟ ପ୍ରଯୁଜ୍ୟ ହେବ ।

ଦାର୍ଶନିକ ହ୍ୟୁମ୍‌ଙ୍କ ସଦୃଶ ଡିଉଇ ମଧ୍ୟ ପ୍ରୋକ୍ତ ତାର୍କିକ ଅନୁସନ୍ଧାନର ବିଶେଷ ବିବରଣୀ ପ୍ରଦାନ କରିଅଛନ୍ତି । ଡିଉଇଙ୍କ ମତରେ ତର୍କଶାସ୍ତ୍ର ଏକ ପ୍ରଗତିମୂଳକ ଶୃଙ୍ଖଳା ଯାହାକି ସବୁ ଯୁଗରେ ପରିବର୍ତ୍ତିତ ହୋଇ ଅଗ୍ରଗତି କରିଥାଏ । ବିଜ୍ଞାନ ଯେତେଦୂର ଅଗ୍ରଗତି କରିବାକୁ ଉଦ୍ୟମ ଅବ୍ୟାହତ ରଖିବ, ତର୍କଶାସ୍ତ୍ର ତଦନୁପାତରେ ଅଗ୍ରଗତି କରିବାକୁ କରିବ । ଯେଉଁ ଦୃଷ୍ଟିକୋଣରୁ ଡିଉଇଙ୍କ ତଦନ୍ତ ତଥା ଅନୁସନ୍ଧାନ ପ୍ରବୃଦ୍ଧ ବା ପ୍ରଣାଳୀ ପରିବର୍ତ୍ତିତ ହୋଇ ଯାଉଥିବ ଏବଂ ସମସ୍ତଙ୍କ ଦ୍ୱାରା ଆଦୃତ ଓ ଗ୍ରହଣୀୟ ହୋଇ ଆସୁଥିବ । ଡିଉଇ ତର୍କଶାସ୍ତ୍ରକୁ ଏକ 'ନ୍ୟାୟୋପକରଣ' ରୂପେ ଗ୍ରହଣ କରିଛନ୍ତି ଏବଂ ଏହାକୁ ଯେ କୌଣସି ଅନିଶ୍ଚିତ ଜଟିଳ ବା ନିର୍ବିକଳ୍ପ ପରିସ୍ଥିତି ଓ ସମସ୍ୟାର ଚତୁର ଏବଂ କୌଶଳପୂର୍ଣ୍ଣ ସମାଧାନର ପନ୍ଥାରୂପେ ସ୍ୱୀକାର କରିଛନ୍ତି । ତେଣୁ ସମସ୍ତ ପ୍ରକାର ଚତୁର ଏବଂ କୌଶଳପୂର୍ଣ୍ଣ କାର୍ଯ୍ୟ ଗୁଡ଼ିକ 'ତର୍କର' ଏବଂ ଅନୁସନ୍ଧାନର' ଅପେକ୍ଷା ରଖେ । ଫଳତଃ ଏହା ଏକ ତର୍କ କର୍ମୀୟ ଆକାର ସୃଷ୍ଟି କରିବସେ ।

କେତେ ଅଧ୍ୟାପକ ଡିଉଇ ତାର୍କିକ ଅନୁସନ୍ଧାନକୁ ଯେପରି ଭାବେ ସତ୍ୟର ସ୍ୱରୂପରେ ପରିଣତ କରିଛନ୍ତି, ସେଥିରେ ମନୀଷୀ ରସେଲ ଏକମତ ହୋଇ ନାହାନ୍ତି । ରସେଲ କହନ୍ତି—

**With m ıny of his opinion I am in almost de ert aggrement....buc to my regret I am compelled to clenent from his most Phılosophical doctrine, viz his substitution of inquiry for 'truth' as the fundamental concept of logic & theory of knowledge; (Phil of J, D—Page-145)**

ଡିଉଇ ପରମ୍ପରାଗତ 'ସତ୍ୟ' ସମ୍ବନ୍ଧୀୟ ଧାରଣା ବା ପ୍ରତ୍ୟୟ ଗୁଡ଼ିକୁ କଠୋର ଭାବେ, ସମାଲୋଚନା କରିଛନ୍ତି । ଏହା ତାଙ୍କର 'କରଣବାଦ'ରୁ ସୁସ୍ପଷ୍ଟ । 'ସତ୍ୟ' ଚିରନ୍ତନ, ଶାଶ୍ୱତ, ଅବିନାଶୀ,ଅକ୍ଷୟ ଏବଂ ଅବ୍ୟୟ ଅର୍ଥାତ ସ୍ୱୟଂ ଭଗବାନ ସଦୃଶ. ଏପରି ସିଦ୍ଧାନ୍ତରେ ବା ମତବାଦରେ ଡିଉଇ କୁତ୍ରାପି ବିଶ୍ୱାସ କରି ନାହାନ୍ତି । ପିଥାଗୋରାସଠାରୁ ଆରମ୍ଭ କରି ପ୍ଲେଟୋ ପର୍ଯ୍ୟନ୍ତ ଏପରିକି ଗାଣିତିକ ସତ୍ୟକୁ ମଧ୍ୟ ଧର୍ମ ସଙ୍ଗରେ ସଂଲଗ୍ନିତ କରି ଦିଆଯାଇଛି ; କିନ୍ତୁ ଡିଉଇଙ୍କର ସତ୍ୟାନୁସନ୍ଧାନ ଧର୍ମୀୟ କିମ୍ବା ଗାଣିତିକ ନ ହୋଇ ମୂଳତଃ ଜୈବିକ ନିୟମ ଉପରେ ପ୍ରତିଷ୍ଠିତ ଏବଂ ଏହାକୁ ଏକ ଅନୁକ୍ରମିକ ତଥା ନିରବଚ୍ଛିନ୍ନ

ଧାରା ରୂପେ ଅଭିହିତ କରିଛନ୍ତି । ସେ କହନ୍ତି କୌଣସି 'ସତ୍ୟକୁ' ଏକ ପରମ ତଥା ଚରମ ସତ୍ୟ ବୋଲି ଗ୍ରହଣ କରିନେବା କେବଳ ଅଧ୍ୟାତ୍ମବାଦୀମାନଙ୍କ ପକ୍ଷରେ ସମ୍ଭବ । ତଥାପି ଅଧ୍ୟାତ୍ମବାଦୀ ଦାର୍ଶନିକ 'ହିଗେଲ' 'ସତ୍ୟକୁ' ଏପରି ଭାବରେ ଗ୍ରହଣ କରିନାହାନ୍ତି—ତାଙ୍କ ମତରେ 'ସତ୍ୟ' ଏକ ପରମ ଆଙ୍ଗିକ ସମଷ୍ଟି ହେଲେ ମଧ୍ୟ ତାହା ଧୀରେ ଧୀରେ ବିଭିନ୍ନ ରୂପରେ ପ୍ରକାଶିତ ହେଉଥାଏ ଏବଂ ଏହାର କେବେହେଲେ ପୂର୍ଣ୍ଣତାପ୍ରାପ୍ତି ଘଟେ ନାହିଁ । ତେଣୁ ଅଧ୍ୟାପକ ଡିଉଇଙ୍କ ତାର୍କିକ ଅନୁସନ୍ଧାନ ଏହି ଦୃଷ୍ଟିକୋଣରୁ ବହୁ ଭାବରେ ହେଗେଲୀୟାନ କହିଲେ ଅତ୍ୟୁକ୍ତି ହେବ ନାହିଁ ; କିନ୍ତୁ ଅଧ୍ୟାପକ ଡିଉଇ ହେଗେଲଙ୍କର ଦୃଶ୍ୟଦୃଶ୍ୟାନ୍ତର ଏବଂ କାଳାନ୍ତର ପରମସତ୍ତା ତଥା ଶାଶ୍ୱତ ବିଶ୍ୱସମ୍ବନ୍ଧୀୟ ପ୍ରତ୍ୟୟ ସହିତ କେବେହେଲେ ଏକମତ ହୋଇ ନାହାନ୍ତି । ଏହା ବ୍ୟତୀତ ଡିଉଇ ଏପରି କୌଣସି ତର୍କ ନିର୍ଣ୍ଣୟ କିମ୍ବା ତର୍କ ବିଚାରକୁ ଗ୍ରହଣ କରି ନାହାନ୍ତି ଯାହାକୁକି ଏକ ପରମ ବା ଚରମ ସତ୍ୟ ବୋଲି ମାନିବାକୁ ପଡ଼ିବ କିମ୍ବା କୌଣସି ବିରୋଧାତ୍ମକ ତର୍କ ନିୟମଗୁଡ଼ିକୁ ସମ୍ପୂର୍ଣ୍ଣ ରୂପେ ମିଥ୍ୟା ବୋଲି କୁହାଯାଇପାରିବ । ଡିଉଇଙ୍କ ମତରେ ତର୍କାନୁସନ୍ଧାନ (Logical inquiry) ଏପରି ଏକ ଧାରା, ଯାହାକି ବ୍ୟକ୍ତିକୁ ଏବଂ ତାହାର ପାରିପାର୍ଶ୍ୱିକ ଅବସ୍ଥାକୁ ପରସ୍ପର ସହିତ ସଂଶ୍ଳିଷ୍ଟ କରିଦେଇଥାଏ ।

କିନ୍ତୁ ଡିଉଇଙ୍କ ମତରେ ଅନୁସନ୍ଧାନ ହେଉଛି ତର୍କଶାସ୍ତ୍ରର ମୂଳାଧାର, ଏହା ସତ୍ୟ କିମ୍ବା ଜ୍ଞାନର ନୁହେଁ । ଅନୁସନ୍ଧାନର ସଂଜ୍ଞା ପୂର୍ବୋକ୍ତମତେ ଡିଉଇ ଯେପରି ଭାବେ ବାଢ଼ିଛନ୍ତି ପ୍ରଜ୍ଞାନୀ ମନୀଷୀ ରସେଲ ତହିଁରେ କୁଆପି ଏକମତ ହୋଇ ନାହାନ୍ତି । ତାଙ୍କ ମତରେ ଏପରି ଏକ ସଂଜ୍ଞା ଅସମ୍ପୂର୍ଣ୍ଣ । ସେ କହନ୍ତି ବିଶ୍ୱକୁ ଏକ ଦୈବିକ ସମଷ୍ଟି ବା ଆଙ୍ଗିକ ସମଷ୍ଟି ଭାବରେ ଗ୍ରହଣ କରି ନେବାର ଯେଉଁ ପରଂପରା ତଥା ଧାରା ରହିଆସିଛି ଅନୁସନ୍ଧାନ ତାହାର ଏକ ଅଂଶ ରୂପେ ବିବେଚିତ ହୋଇପାରେ । ଏଥିରୁ ସୂଚିତ ହୁଏ ଯେ, ଡିଉଇଙ୍କ ଉପରେ ପ୍ରାଣୀବିଜ୍ଞାନ ଏବଂ ହେଗେଲଙ୍କ ତତ୍ତ୍ୱଦର୍ଶନର ପ୍ରଭାବ ସୁସ୍ପଷ୍ଟ ; କିନ୍ତୁ ରସେଲ କହନ୍ତି 'ତାର୍କିକ ଅନୁସନ୍ଧାନ' ଯୋଗୁଁ ହିଁ ଯେ ବିଶ୍ୱର ଏକୀକରଣ ସମ୍ଭବ ଏକଥା ଦୃଢ଼ ସ୍ୱରରେ କଦାପି କୁହାଯାଇ ନ ପାରେ । ରସେଲ ଯୁକ୍ତି ବାଢ଼ିଛନ୍ତି ଯେ ମୋତେ ଯଦି କେହି ଗୁଡ଼ାଏ ଅସଜଡ଼ା କାର୍ଡଗୁଡ଼ିକୁ ସଜାଡ଼ିଦେବାକୁ କହନ୍ତି, ମୁଁ ସେଗୁଡ଼ିକୁ ଯଥାନୁକ୍ରମରେ ସଜାଡ଼ିଦେବି ଏବଂ ମୁଁ ଯଦି ଡିଉଇଙ୍କ ମତର ପୃଷ୍ଠପୋଷକ ହୋଇଥିବି, ତାହାହେଲେ ତତ୍‌କ୍ଷଣାତ୍ କହିବି ଯେ ଏହା କାର୍ଡଗୁଡ଼ିକର ଏକ ସମଷ୍ଟି କିମ୍ବା ଏହା ଏକ କାର୍ଡ ପକେଟ ; କିନ୍ତୁ ମୋତେ ଯଦି ପୁନଃ ପଚରାଯାଏ ଯେ କାର୍ଡଗୁଡ଼ିକ ସଜାଇବା ପୂର୍ବରୁ ସେସବୁର ଅନୁକ୍ରମିକ ଗୁଡ଼ିକ ଦେଖାଇ ଦିଅ, ତାହାହେଲେ ମୁଁ ତତ୍‌କ୍ଷଣାତ୍ କହିବି ଯେ ପ୍ରଶ୍ନକର୍ତ୍ତାଙ୍କର କାର୍ଡ ସମ୍ବନ୍ଧୀୟ ଧାରଣା ନିହାତି ସ୍ଥାଣୁ ଅଟେ ; କିନ୍ତୁ ଯେହେତୁ ମୁଁ ଜଣେ ପ୍ରଗତିଶୀଳ ବ୍ୟକ୍ତି, ସେହି ହେତୁ ମୁଁ ମୋର କାର୍ଡସମ୍ବନ୍ଧୀୟ 'ଅନୁସନ୍ଧାନଟିକୁ'

ସହଜ ଏବଂ ସୁଗମ୍ କରିବା ପାଇଁ ଅନୁସଂଧାନ ଦ୍ୱାରା କାର୍ଡ଼ଗୁଡ଼ିକର ପୂର୍ବାବସ୍ଥାକୁ ପରିବର୍ତ୍ତିତ କରାଯାଇଛି । ଉକ୍ତ ସମସ୍ୟା ଅର୍ଥାତ୍ ପରିସ୍ଥିତିଟିର ସମାଧାନର ବୈଧତା ଏବଂ ଯୌକ୍ତିକତା କେବଳ ହେଗେଲିୟାନ ଭ୍ରମ (ଆଭାସ) ଏବଂ ପରମ ସତ୍ତାକୁ ନେଇ ବିଚାର କଲେ ପ୍ରକୃତ ଭାବେ ଜଣାପଡ଼ିବ । ଭ୍ରାମ୍ୟମାନ ତଥା ଆଭାସିକ ଜଗତ ଖଣ୍ଡ ବିଖଣ୍ଡ ଏବଂ ପରସ୍ପର ଅସଂଲଗ୍ନ । ପକ୍ଷାନ୍ତରେ ପରମତତ୍ତ୍ୱ ବା ସତ୍ତା କେବଳ ଏକ ସୁସମନ୍ୱିତ ଆଙ୍ଗିକ ସମଷ୍ଟି ମାତ୍ର (Organic whole) । ସେହି ଦୃଷ୍ଟିରୁ ରସେଲ କହନ୍ତି ଯେ ମୁଁ ଯେତେବେଳେ କାର୍ଡ଼ଗୁଡ଼ିକୁ ସଜାଇ ଦେଲି । ସେତେବେଳେ ମୁଁ ଅଧିକ କିଛି ନ କରି, କେବଳ କାର୍ଡ଼ଗୁଡ଼ିକର ପୂର୍ବାବସ୍ଥାକୁ ପ୍ରକାଶ କରିଛି ମାତ୍ର । ଏକଥାଟିର ମର୍ମ ବୋଧହୁଏ ଅଧ୍ୟାପକ ଡ଼ିଉଇ ଉତ୍ତମ ରୂପେ ବୁଝିପାରି ନାହାନ୍ତି । ତେଣୁ ମନୀଷୀ ରସେଲ କହନ୍ତି ଆଙ୍ଗିକ ସମଷ୍ଟିର ଉକ୍ତ ତତ୍ତ୍ୱଦର୍ଶନ ଡ଼ିଉଇଙ୍କର ମତବାଦକୁ କିମ୍ବା ସିଦ୍ଧାନ୍ତକୁ ବହୁଳାଂଶରେ ପଣ୍ଡ କରିଦେଇଛି ।

ଏଠାରେ ରସେଲ ମଧ୍ୟ ଆଉ ଏକ ପ୍ରଶ୍ନ ଉତ୍‌ଥାପନ କରିଛନ୍ତି—ତାହା ହେଉଛି ଡିଉଇଙ୍କ ଦ୍ୱାରା ଉଦ୍ଭାବିତ 'ଅନୁସନ୍ଧାନ' ଏବଂ ଅନ୍ୟାନ୍ୟ ସାଂଗଠନିକ ପ୍ରକ୍ରିୟା ମଧ୍ୟରେ ପ୍ରଭେଦ କଣ ? କିନ୍ତୁ ଡ଼ିଉଇ କହନ୍ତି ଯେ ସତ୍ୟର ସଂଜ୍ଞା ନିରୂପିତ ହେବ ଅନୁସନ୍ଧାନ ଦ୍ୱାରା ଏବଂ ଅନୁସନ୍ଧାନ ସର୍ବଦା ଉଦ୍ଦେଶ୍ୟପୂର୍ଣ୍ଣ ଅଟେ । କିନ୍ତୁ ରସେଲଙ୍କ ମତରେ ଏହା ଯଦି ଡ଼ିଉଇଙ୍କ ମତ ହୁଏ ତା ହେଲେ ଯାହା ଉଦ୍ଦେଶ୍ୟପୂର୍ଣ୍ଣ ତାହା ସତ୍ୟର ପ୍ରତିପାଦକ ; କିନ୍ତୁ ଡ଼ିଉଇ କହନ୍ତି ଯେ—"Truth is to be defined in terms of inquiry. not vice versa" ଏପରି ଏକ ଯୁକ୍ତିକୁ ଅଧିକ ଦୃଢ଼ ଭାବେ ଉପସ୍ଥାପନ କରିବା ପାଇଁ ଡ଼ିଉଇ ମଧ୍ୟ ପିଅରସଙ୍କ (Peirce) ସତ୍ୟର ସଂଜ୍ଞାର ଅବତାରଣା କରିଛନ୍ତି ଯଥା—"Truth is opinion which is tasted to be ultimately agreed to by all who investigate" ଏପରି ଏକ ସତ୍ୟର ସଂଜ୍ଞାକୁ ମହାନ ଦାର୍ଶନିକ ରସେଲ ସର୍ବଦା ସଂଶୟ ଚକ୍ଷୁରେ ଦେଖି, ଅବଶେଷରେ କହିଛନ୍ତି ଯେ ଅନ୍ୱେଷଣକାରୀମାନେ ତାହେଲେ ସତ୍ୟ ଦ୍ୱାରା ସତ୍ୟର ଅନୁସନ୍ଧାନ କରୁଛନ୍ତି ବୋଲି ଡ଼ିଉଇଙ୍କ ମତାନୁଯାୟୀ ବୁଝିବାକୁ ପଡ଼ିବ । ଡ଼ିଉଇଙ୍କ ମତରେ ଜ୍ଞାନ ବ୍ୟକ୍ତି ଜୀବନର କୌଣସି ଏକ ଲକ୍ଷ୍ୟର ଏକ ଅଂଶ ବିଶେଷ ନୁହେଁ, ବରଂ ଏହା କୌଣସି ଏକ ନିର୍ଦ୍ଦିଷ୍ଟ ସନ୍ତୋଷ ବିଧାନର ଉପାୟ ମାତ୍ର ; କିନ୍ତୁ ଏହା ନିରାଟ ସତ୍ୟ ଯେ ଅବୟବ ସଂସ୍ଥାନ ତଥା ଅଙ୍ଗି ଓ ତାର ପରିସ୍ଥିତିର ସମ୍ପର୍କରୁ ଏକ ସନ୍ତୋଷଜନକ କିମ୍ବା ଅସନ୍ତୋଷଜନକ ଅବସ୍ଥା ଉପୁଜି ପାରେ, ଯଦି ଏ ଦୁହିଁଙ୍କ ସମ୍ପର୍କରୁ ଅସନ୍ତୋଷଜନକ ଅବସ୍ଥା ସୃଷ୍ଟି ହୁଏ ତାହାର ପ୍ରତିକାର ଏବଂ ସମାଧାନର ଆବଶ୍ୟକ ପଡ଼େ । ଏତାଦୃଶ ସମାଧାନ ଅନୁସନ୍ଧାନ ଦ୍ୱାରା ସମାହିତ ହୋଇଥାଏ । ତେଣୁ ପରିସ୍ଥିତିର ଉନ୍ନତିବିଧାନ ଅନୁସନ୍ଧାନ ଉପରେ ସମ୍ପୂର୍ଣ୍ଣ ନିର୍ଭର

କରେ । ଏଥିପାଇଁ ଜୀବ ବା ଅଙ୍ଗୀର ଦୃଢ଼ବିଶ୍ବାସ ଓ ବୁଦ୍ଧିର ଆବଶ୍ୟକତା ପଡ଼େ । ଡ୍ୟୁଇଙ୍କ ମତରେ ଏ ବିଶ୍ବାସ କ୍ଷେତ୍ର ଅଥବା ପରିସ୍ଥିତିକୁ ନେଇ ସତ୍ୟ କିମ୍ବା ଅସତ୍ୟ ହୋଇ ନ ପାରେ । ବିଶ୍ବାସ କେବଳ ଭଲ (Good) କିମ୍ବା ମନ୍ଦ ବୋଲି କ୍ଷେତ୍ର ବିଶେଷ ନେଇ ବିବେଚିତ ହୋଇପାରେ, ଏବଂ କୌଣସି ଏକ ମନ୍ଦ ବିଶ୍ବାସ ଅବସ୍ଥାର ଉନ୍ନତି ବିଧାନ କରିପାରିଲେ ତାହା ଭଲରେ ପରିଣତ ହୋଇପାରେ ; କିନ୍ତୁ ରସେଲଙ୍କ ମତରେ ଯଦି ଆମକୁ କେହି କହେ ଯେ ତୁମେ ସକାଳେ ଘି ସହିତ ଜଳଖିଆ ଖାଇଛ ? ଆମେ ଯଦି ଜଣେ ସାଧାରଣ ବ୍ୟକ୍ତି ହୋଇଥାଉଁ, ତାହେଲେ ଆମେ କହିବୁ—ଆମେ ମନେପକାଉଁ । ଧରିନିଆଯାଉ ଆମେ ଜଣେ ଡ୍ୟୁଇଙ୍କ ପଞ୍ଚଶିଷ୍ୟ । ତାହେଲେ ଆମେ ଡ୍ୟୁଇଙ୍କ ମତାନୁଯାୟୀ କହିବୁ ଯେ ରୁହ, ଆମେ ଟିକିଏ ଅନୁସନ୍ଧାନ କରୁ । ଅନୁସନ୍ଧାନ ପରେ ଆମେ ବିଶ୍ବାସ କରି କହିବୁ, ଯେ ସକାଳେ ଘି ସହିତ ଜଳଖିଆ ଖାଇଛୁ କି ନା । ରସେଲ କହନ୍ତି ବାସ୍ତବିକ ଏପରି ଏକ ବିଷୟର ଅତି ଅସ୍ୱାଭାବିକ ପରି ମନେହୁଏ । ପ୍ରଜ୍ଞାନୀ ରସେଲ ଓ ପଣ୍ଡିତ ମନୀଷୀ ଡ୍ୟୁଇଙ୍କ ମଧ୍ୟରେ ପ୍ରଭେଦ ଏଇଠି । ରସେଲଙ୍କ 'ବିଶ୍ବାସ'ର ଉତ୍ପତ୍ତି କୌଣସି ଏକ 'କାରଣରୁ' ଏବଂ ଡ୍ୟୁଇ ଭାବନ୍ତି 'ବିଶ୍ବାସ'ର ଉତ୍ପତ୍ତି 'ପରିଣାମରୁ' (effects) ତେଣୁ "The main difference between Dr. Dewey me is that he (Dewey) judges belief by its effects, where as I judge it by its Cause" * (1)

---

* (1) H. Phil-by B. Russell—780

## ତୃତୀୟ ପରିଚ୍ଛେଦ

# ଡିଉଇଙ୍କ ଶିକ୍ଷାଦର୍ଶନ

### (କ)

ବିଗତ ୧୮୯୧ ମସିହାରେ ଅଧ୍ୟାପକ ଡ଼ିଉଇଙ୍କ ଦ୍ୱାରା ପ୍ରଣୀତ ପୁସ୍ତକ "ବିଦ୍ୟାଳୟ ଏବଂ ସମାଜ" ପ୍ରକାଶିତ ହୁଏ । ସେ ଉକ୍ତ ପୁସ୍ତକଟିରେ ଶିକ୍ଷା ପଦ୍ଧତି ବା ପ୍ରଣାଳୀ ସମ୍ବନ୍ଧରେ ବିଶଦ ପର୍ଯ୍ୟାଲୋଚନା କରନ୍ତି । ଠିକ୍ ତାପରେ ୧୯୧୬ ମସିହାରେ ତାଙ୍କର "ଗଣତନ୍ତ୍ର ଏବଂ ଶିକ୍ଷା" ଶିରୋନାମାରେ ଅନ୍ୟ ଏକ ପୁସ୍ତକ ପ୍ରକାଶିତ ହୁଏ । ସେଥିରେ ସେ କହିଛନ୍ତି ଯେ "ଗଣତନ୍ତ୍ର ଏବଂ ଶିକ୍ଷା" ମୋର ଏପରି ଏକ ପୁସ୍ତକ, ଯେଉଁଥିରେ କି ଗଣତନ୍ତ୍ର ଏବଂ ଶିକ୍ଷା ବ୍ୟତୀତ ମୋର ଦାର୍ଶନିକ ଚିନ୍ତାଧାରାର ମଧ୍ୟ ବିଶଦ ଆଲୋଚନା କରାଯାଇଛି । ସେ ପ୍ରୋକ୍ତ ପୁସ୍ତକରେ ଅତି କ୍ଷୋଭର ସହିତ କହିଛନ୍ତି ଯେ, ବହୁ ଦାର୍ଶନିକ ତଥା ଏପରିକି ଶିକ୍ଷାର ଦାୟିତ୍ୱ ବହନ କରିଥିବା ଅନେକ ଦାର୍ଶନିକ ଶିକ୍ଷାବିତ୍ ମଧ୍ୟ ଶିକ୍ଷାକୁ ଏକ ଦାର୍ଶନିକ ଦୃଷ୍ଟି କୋଣରୁ ବିଚାର କରି ନାହାନ୍ତି ଅଥବା ଶିକ୍ଷାର ଏକ ଦାର୍ଶନିକ ଭିତ୍ତିଭୂମି ଗଢ଼ି ପାରି ନାହାନ୍ତି । ଶିକ୍ଷା ପ୍ରାପ୍ତି ମନୁଷ୍ୟର ଏକ ପରମଲକ୍ଷ୍ୟ । ଏହି ଶିକ୍ଷା ଦ୍ୱାରାହିଁ ବିଶ୍ୱର ଯାବତୀୟ ସମସ୍ୟା ତଥା ନୀତି ସମ୍ବନ୍ଧୀୟ, ଧର୍ମସମ୍ବନ୍ଧୀୟ, ରାଜନୀତି ସମ୍ବନ୍ଧୀୟ ଏବଂ ସର୍ବୋପରି ତର୍କ ସମ୍ବନ୍ଧୀୟ ସମସ୍ୟାବଳୀର ସୁସମାଧାନ ହୋଇଥାଏ । ତେଣୁ "ଶିକ୍ଷା ଏବଂ ଦର୍ଶନକୁ" ଡକ୍ଟର ଡ଼ିଉଇ ଏପରି ଏକ ନିବିଡ଼ ଅଭିନ୍ନ ତଥା ଘନିଷ୍ଠଭାବେ ସମ୍ପୃକ୍ତ କରାଇ ଦେଇଛନ୍ତି ଯେ, ଦର୍ଶନର ଅର୍ଥବୋଧକୁ ସେ ଶିକ୍ଷାରେ ପ୍ରୟୋଗକରି ଶିକ୍ଷାକୁ ଅର୍ଥନୈତିକ ସ୍ୱାର୍ଥରେ ବିନିଯୋଗ କରିବାକୁ ମତ ଦେଇଛନ୍ତି ।

ଅଧ୍ୟାପକ ଡ଼ିଉଇ କହନ୍ତି ଶିଶୁ ଏକ 'ଅଣୁ' ସଦୃଶ । ପରନ୍ତୁ ଶିଶୁ ଏକ 'ମିନିବିଶ୍ୱ' କହିଲେ ଅତ୍ୟୁକ୍ତି ହେବ ନାହିଁ । ଅଥବା 'ଲାଇବ୍ନିଜ'ଙ୍କ ଭାଷାରେ ଶିଶୁ ଏକ 'ଚିଦାଣୁ ସଦୃଶ' (Like a monad) ଯୁବକ ଡ଼ିଉଇ ଯେତେବେଳେ ଚିକାଗୋ ବିଶ୍ୱବିଦ୍ୟାଳୟରେ ଦର୍ଶନ ମନସ୍ତତ୍ତ୍ୱ ଏବଂ ଶିକ୍ଷା ବିଭାଗ ଗୁଡ଼ିକରେ ମୁଖ୍ୟ ଅଧ୍ୟାପକ ଭାବେ ନିଯୁକ୍ତି ପାଆନ୍ତି, ସେତେବେଳେ ସେ ଶିକ୍ଷା ସମ୍ବନ୍ଧୀୟ ସ୍ୱୀୟ ବିଚାରଧାରାକୁ ବସ୍ତୁତଃ କାର୍ଯ୍ୟରେ ପରିଣତ କରିବାକୁ ଯଥେଷ୍ଟ ସୁଯୋଗ ପାଆନ୍ତି । 'ଉଇଲିୟମ ହେଡ କିଲପାଟ୍ରିକ' କହନ୍ତି ଯେ—

(1) That education was early felt to be inherent in his mind. For example, an idea was not an idea in any full sense until it was enacted in the actual situation to effect some purpose. On no other basis could its adequacy be tested and its deficiencies corrected. More over an idea could be initially conceived in any full sense only as the person concerned was involved in a situation which, on the one hand, called forth the idea and, on the other, called for the application of the idea so as to modify and control the situation"

ଏଥିପାଇଁ ଅଧ୍ୟାପକ ଡିଉଇ ବିଭିନ୍ନ ସ୍ଥାନମାନଙ୍କରେ "ପ୍ରୟୋଗଶାଳା ବିଦ୍ୟାଳୟମାନ" ସ୍ଥାପନା କରନ୍ତି । ଏପରି ବିଦ୍ୟାଳୟ ତଥା ପାଠଶାଳା ମାନଙ୍କରେ ଛାତ୍ର-ଛାତ୍ରୀମାନେ ନିଜେ ନିଜେ ବିଭିନ୍ନ ପ୍ରକାର ଉପୋକରଣ ପ୍ରସ୍ତୁତ କରିବା ସଙ୍ଗେ ସଙ୍ଗେ ସେ ଗୁଡ଼ିକର ଉପଯୋଗ ପ୍ରଣାଳୀ ଜାଣି ତାହା ବ୍ୟବହାର କରି ଶିଖନ୍ତି । ଏହିପରି ଡିଉଇଙ୍କ ତତ୍ତ୍ୱାବଧାନରେ ଧନ୍ଦାମୂଳକ ତଥା ଅନ୍ୟାନ୍ୟ ସାଧାରଣ ଶିକ୍ଷା ଗୁଡ଼ିକର ପ୍ରବର୍ତ୍ତିନ ହୁଏ । ଶିଶୁମାନେ ବାସ୍ତବ ଜୀବନ ଏବଂ ଦୁନିଆର ସମସ୍ୟା ଏବଂ ଘଟଣାବଳୀ ମାନଙ୍କର ସମ୍ମୁଖୀନ ହୁଅନ୍ତି ପାଠଶାଳାମାନଙ୍କରେ ଏବଂ ସେମାନେ ସେସବୁ ସମସ୍ୟା-ଗୁଡ଼ିକର ସମାଧାନ କରିବା ଶିଖନ୍ତି ସେହିଠାରେ । ପୂର୍ବରୁ କୁହାଯାଇଛି ଯେ, ଅଧ୍ୟାପକ ଡିଉଇ ଥିଲେ ଦୃଷ୍ଟି ଭଙ୍ଗୀରେ ହେଗେଲ୍‌ପନ୍ଥୀ—ବାସ୍ତବ ଦୁନିଆରେ ଗୋଟିଏ କାର୍ଯ୍ୟ କରି ଶିଖିଲେ ବା ସମାଧାନ କରି ଦେଲେ, ତାହା ଏହି ଅଙ୍ଗୀଭୂତ ସାକଲ୍ୟ ଦୁନିଆଁର ଏକ ମଙ୍ଗଳ ବୋଲି, ଡିଉଇଙ୍କର ହୃଦବୋଧ ହେଉଥିଲା । ତେଣୁ ସେ କହନ୍ତି * (1) It would be pos ible to compress the history of all mankind into the evolution of flax, cotten and wool fibres into clothing. ଡିଉଇଙ୍କ ମତରେ ଶିଶୁ ପାଠଶାଳାରେ ଦୁନିଆର ବିଭିନ୍ନ ସମସ୍ୟାକୁ ପ୍ରେରଣା ଏବଂ ପରୀକ୍ଷଣ ମାଧ୍ୟମରେ ଜାଣିବ ଏବଂ ସେଗୁଡ଼ିକର ସମାଧାନ କରି ଶିଖିବ । ଏହା ଫଳରେ ସେ ଶିଳ୍ପ, ସଭ୍ୟତା ଏବଂ ସଂସ୍କୃତି ଗଢିତୋଳିବାରେ ସହାୟକ

* (1) Deweys influence on Education—written by william. H. Kilpatrick (The phil of J. D.—Page 451-52)

* (1) History of Phil—by M. R. wright—Page 536.

ହେବ । ଏତଦ୍‌ଭିନ୍ନ ଶିକ୍ଷା ପ୍ରଦାନରେ ମଧ୍ଯ ବାଧ୍ଯ ବାଧ୍ଯକତା ରହିବ ନାହିଁ । ଶିଶୁ ନିଜର ପ୍ରବୃତ୍ତି ନେଇ ଉତ୍ସାହ ଓ ଉଦ୍ଦୀପନାର ସହିତ ଶିକ୍ଷଣୀୟ ବିଷୟବସ୍ତୁ ଗୁଡ଼ିକୁ ଜାଣିବ ଏବଂ ସେସବୁକୁ କାର୍ଯ୍ୟରେ ପରିଣତ କରି ସମାଜରେ ହିତ ତଥା ପ୍ରଗତି ସାଧନ କରିବ । ଡିଉଇ ପୁଣି କହନ୍ତି ଯେ ଶିକ୍ଷାର ଲକ୍ଷ୍ୟ କେବଳ କର୍ମାଭିମୁଖୀ ନୁହେଁ ବରଂ ଏହା ସମାଜରେ ବୌଦ୍ଧିକ ଜ୍ଞାନର ବିକାଶ, ସାଧାରଣ ଶିକ୍ଷାର ପ୍ରସାର, ସଂସ୍କୃତିର ଉନ୍ନତି ଏବଂ ସର୍ବୋପରି ମନୁଷ୍ୟ ସମାଜର ସର୍ବବିଧ ପ୍ରଗତି ବିଧାନାର୍ଥେ ଉଦ୍ଦିଷ୍ଟ ।

* The activities of the School were not vocational in the narrower sense—they were not training in some particular trade. On the contrary they were truly liberal and cultural, since they led to the study of all fields of inquiry that could be seen to be corrected with actual living as it was going in the world about the pupils.

ଡିଉଇ କହନ୍ତି ପାଠଶାଳା ଗୋଟିଏ କ୍ଷୁଦ୍ର ଗୋଷ୍ଠୀ ତୁଲ୍ୟ । ସେଠାରେ ଗୋଷ୍ଠୀଗତ ଜୀବନ ଯାପନର ଶିକ୍ଷା ମିଳିଥାଏ ; କିନ୍ତୁ ଦୁଃଖର ସହିତ ଡିଉଇ ପୁଣି କହିଛନ୍ତି ଯେ ଅତୀତର ଭ୍ରାନ୍ତମୂଳକ ଦାର୍ଶନିକ ତତ୍ତ୍ୱରାଜି ଯୋଗୁଁ ସମାଜରେ କେତେକ ଚତୁର ଗୋଷ୍ଠୀ ସଂସ୍କୃତିଗତ ତଥା ବୌଦ୍ଧିକ ଶିକ୍ଷା ଗୁଡ଼ିକକୁ ଏକଚାଟିଆ କରି କେବଳ ସମସ୍ତ ପ୍ରକାର କର୍ମାଭିମୁଖୀ ତଥା ଧନ୍ଦାମୂଳକ ଶିକ୍ଷାଗୁଡ଼ିକୁ କୋଟି କୋଟି ଖଟିଖିଆ ଏବଂ ଶ୍ରମଜୀବୀ ଗୋଷ୍ଠୀମାନଙ୍କ ଉପରେ ଲଦି ଦେଇଛନ୍ତି । ଏପରି ଏକ ନିନ୍ଦିତ ପ୍ରଥା ଏବଂ ପରଂପରା ଆଜି କାହିଁକି, ଏପରିକି ପ୍ଲେଟୋ ଏବଂ ଏରିଷ୍ଟଟଲଙ୍କ ଅମଳରୁ ସମାଜରେ ପ୍ରଚଳିତ କରାଇ ନିଆଯାଇଛି ବୋଲି ଅଧ୍ଯାପକ ଡିଉଇ ଦୃଢ଼ ସ୍ୱରରେ ଅଭିଯୋଗ କରିଛନ୍ତି । ଡିଉଇଙ୍କ ଭାଷାରେ—Plato and Aristotle were aristocrates who looked down upon the useful life of the artisans and put too premiums upon purely intellectual speculation without practical utility. (2)

* (1) History of phil—by W. K. Wright—Page-536
* (2) Ibd—Page-538.

ଦେକାର୍ଟେସ୍ ଏବଂ ତାଙ୍କର ସମସାମୟିକ ଦାର୍ଶନିକମାନେ ଜଡ଼ ପ୍ରକୃତି ଏବଂ ମନକୁ ଦ୍ୱୈତ ଅର୍ଥରେ ବୁଝିଲେ । ତାଙ୍କ ପରବର୍ତ୍ତୀ ଦାର୍ଶନିକମାନେ ସଂବେଦନକୁ ବହିର୍ଜଗତ ଏବଂ ବିଭିନ୍ନ ମାନସିକ ଅବସ୍ଥାରୁ ବିଚ୍ଛିନ୍ନ କରିଦେଇ ସେଗୁଡ଼ିକୁ ଚରମଜ୍ଞାନ ବୋଲି ଧରିବସିଲେ । ହବ୍ସ, ଆଡ଼ାମସ୍ମିଥ ଏବଂ ବେନ୍ଥାମ ଇତ୍ୟାଦି ପଣ୍ଡିତମାନେ ମନୁଷ୍ୟର ବ୍ୟକ୍ତି କୈନ୍ଦ୍ରିକ ପ୍ରବୃତ୍ତି ଏବଂ ସ୍ୱାର୍ଥପରତାକୁ ସାମାଜିକ ତଥା ଗୋଷ୍ଠୀ ଚେତନାରେ ପରିଣତ କରିବାକୁ ପ୍ରବଳ ଉଦ୍ୟମ କଲେ ; କିନ୍ତୁ ସେମାନେ ସାମାଜିକ ଚେତନାକୁ ସମଷ୍ଟିଗତ ତଥା ଉନ୍ନତ କରିପାରିଲେ ନାହିଁ । ଅଧ୍ୟାପକ ଡିଉଇ ଗଭୀର ଭାବେ ଅନୁଭବ କଲେ ଯେ ସମସାମୟିକ ସମାଜର ଅନୁଭୂତି ଏବଂ ଆବଶ୍ୟକତାକୁ ଆଖିଆଗରେ ରଖି ଦର୍ଶନର ଗତି ଏବଂ ପ୍ରକୃତିକୁ ପରିବର୍ତ୍ତିତ କରିବାକୁ ପଡ଼ିବ । ତାଙ୍କ ମତରେ ଦର୍ଶନର ଉତ୍ପତ୍ତି ସାମାଜିକ ଜୀବନ ଏବଂ ତାର ପରିବେଶରୁ । (1) **(Philosophy, Dewey, thinks arises out of the problems originating in the difficulties of social life)** । ଡିଉଇ ପୁନଶ୍ଚ କହିଛନ୍ତି—ଯେତେବେଳେ ସାମାଜିକ ଜୀବନରେ, ଧର୍ମ, ଦର୍ଶନ, ଅର୍ଥନୀତି, ରାଜନୀତି ତଥା ଯେ କୌଣସି କ୍ଷେତ୍ରରେ ଗ୍ଲାନି ଏବଂ ଦ୍ୱନ୍ଦ୍ୱ ଦେଖାଦେବ, ସେତେବେଳେ ସମାଜକୁ 'ଶିକ୍ଷା' ପ୍ରକୃତ ପ୍ରଜ୍ଞାନ ଦେଇ, ସମାଜକୁ ନୂତନ ଦିଗ୍‌ଦର୍ଶନ ଦେବ ।

## (ଖ) "ଶିକ୍ଷାରେ ଡିଉଇଙ୍କ ପରବର୍ତ୍ତୀକାଳର ପ୍ରଭାବ"

ଅଧ୍ୟାପକ ଡିଉଇ ଶିକ୍ଷାର ଆମୂଳଚୂଳ ସଂସ୍କାର କରିବା ପାଇଁ ଯେପରି ଭାବେ ସେ ତାଙ୍କର ପୂର୍ବବର୍ତ୍ତୀକାଳର ପ୍ରଭାବକୁ ସ୍ୱୀକାର କରି ନେଇଛନ୍ତି, ଠିକ୍ ସେହିପରି ସେ ତାଙ୍କର ପରବର୍ତ୍ତୀକାଳକୁ ମଧ୍ୟ ଆଖିଆଗରେ ରଖି ଶିକ୍ଷାସଂସ୍କାରର ମୂଳଭିତ୍ତି ସ୍ଥାପନା କରିଛନ୍ତି ।

ଅଧ୍ୟାପକ ଡିଉଇଙ୍କ ସମୟରେ ଯେଉଁମାନେ ୧୮୦୦ ମସିହାରୁ ୧୯୦୦ ମସିହା ମଧ୍ୟରେ 'ଶିକ୍ଷା-ସଂସ୍କାର' ଆନ୍ଦୋଳନର ନେତୃତ୍ୱ ନେଇଥିଲେ, ସେମାନଙ୍କ ମଧ୍ୟରେ **C. F. W. Parker. Froebel. W. T. Hariss Mr charles De Girmo** ଏବଂ **Frank Mcmurry** ପ୍ରଧାନ । ମିଷ୍ଟର ପାର୍କର ପାଠଶାଳା ଗୁଡ଼ିକରେ ଶିଶୁ ମନରେ ଉତ୍ସାହ ଉଦ୍ଦୀପନା ଏବଂ ସ୍ୱତୋପର ଜୀବନ ଓ ଶକ୍ତିର ସଞ୍ଚାର କରାଇବାକୁ ପ୍ରବଳ ଉଦ୍ୟମ କରୁଥାନ୍ତି । ମିଷ୍ଟର ଫ୍ରବେଲ୍ସ 'ମନୁଷ୍ୟର ଶିକ୍ଷା' ପୁସ୍ତକଦ୍ୱାରା କିଣ୍ଡରଗାର୍ଟେନ ପଦ୍ଧତିର ପ୍ରଚଳନ ଉଦ୍ଦେଶ୍ୟରେ ପ୍ରଚାର ଏବଂ ଜନମତ ସୃଷ୍ଟି କରିଥାନ୍ତି । ଅଧ୍ୟାପକ ଡିଉଇ ଏବଂ ମିଷ୍ଟର ଫ୍ରୋଂବେଲ୍ ଉଭୟେ ଶିକ୍ଷାରେ 'ଶିଶୁର କର୍ମ' ଉପରେ ଅଧିକ ଗୁରୁତ୍ୱ ଆରୋପ

---

(1) History of Phil-by W. K. wright—Page-539

କରିବା ସଙ୍ଗେ ସଙ୍ଗେ ପଠନୀୟ ବିଷୟବସ୍ତୁ ଗୁଡ଼ିକ କିପରି ଜୀବନର ଅବିଚ୍ଛେଦ୍ୟ ଅଙ୍ଗରୂପେ ବିବେଚିତ ହୋଇ ଶିଶୁର ଜୀବନ ସଂଗ୍ରାମରେ ଉପଯୋଗୀ ହେବ, ତାହାର ନିର୍ଦ୍ଦେଶ ଦେଉଥାନ୍ତି । ଏହିପରି ଦୁଇଟି ଅବସ୍ଥା ମଧ୍ୟରେ ମିସ୍ ଆନା ଇ: ବ୍ର୍ୟାନ 'କିଣ୍ଡରଗାର୍ଟନ' ଶିକ୍ଷା ପଦ୍ଧତିର ସାମାନ୍ୟ କେତେକ ପରିବର୍ତ୍ତନ କରିବାକୁ ସୂଚନା ଦେଲେ । ଅବଶେଷରେ ଡିଉଇ କୁଣ୍ଠା ପ୍ରକାଶ କଲେ, ମିଷ୍ଟର ହାରିସ ଏବଂ ତାଙ୍କର ଅନୁଗାମୀ ମାନଙ୍କର ଶିକ୍ଷା ପଦ୍ଧତିକୁ ଗ୍ରହଣ କରିବାକୁ । ବାସ୍ତବିକ ମିଷ୍ଟର ହାରିସ ଆଦର୍ଶର ଗୁରୁତ୍ୱ ବୋଧରେ ଜଣେ ଖାଣ୍ଟି ହେଗେଲିୟାନ ଥିଲେ । ଡିଉଇ ତାଙ୍କର ପରବର୍ତ୍ତୀ ଅବସ୍ଥାରେ ହେଗେଲିୟାନ ଦୃଷ୍ଟିଭଙ୍ଗୀ ନେଲେ ; କିନ୍ତୁ ଶିକ୍ଷା କ୍ଷେତ୍ରରେ ପ୍ରଥମତଃ ହେଗେଲିୟାନ ନ ଥିଲେ । ଶିକ୍ଷାରେ ହର୍ବର୍ଟିୟାନ ଇଣ୍ଟେରେଷ୍ଟ ଉପରେ ବିଶେଷ ଗୁରୁତ୍ୱ ଆରୋପ କରୁଥାନ୍ତି । ଗ୍ରିଲ୍ସ ଡ଼ିଗାର୍ମୋ ଏବଂ ଫ୍ରାଙ୍କ ମାକ୍‌ମୁରି ଇତ୍ୟାଦି । ଉକ୍ତ ହର୍ବର୍ଟିୟାନ ଇଣ୍ଟେରେଷ୍ଟ ସିଦ୍ଧାନ୍ତକୁ ଗ୍ରହଣ କରିନେବା ଦ୍ୱାରା ଶିଶୁର ଚରିତ୍ର ଗଠନ ପାଠଶାଳାରେ ସମ୍ଭବ ହୋଇ ପାରିବ ବୋଲି 'ଗ୍ରିଲ୍ସ୍' ଏବଂ ମାକ୍‌ମୁରି ଦୃଢ଼ମତ ପୋଷଣ କରୁଥାନ୍ତି । ଏହି ପଦ୍ଧତିରେ ଶିଶୁର ଚରିତ୍ର ସଂପୂର୍ଣ୍ଣ ଶିକ୍ଷକଙ୍କ ଉପରେ ନିର୍ଭରକରେ ବୋଲି କୁହାଯାଉଥାଏ । ଶିକ୍ଷାରେ ଏପରି ଏକ ସିଦ୍ଧାନ୍ତକୁ ଗ୍ରହଣ କରି ନେବାକୁ ଡିଉଇ ପସନ୍ଦ କଲେ ନାହିଁ । ଏପରି ଏକ ପଦ୍ଧତି ସଂପୂର୍ଣ୍ଣ ଶିକ୍ଷକ ଉପରେ ନିର୍ଭରଶୀଳ ହୋଇ ଯିବ ବୋଲି ଡିଉଇ ଆଶଙ୍କା କରନ୍ତି । ଡିଉଇଙ୍କ ସହିତ ମିଷ୍ଟର ହାରିସ ଏବଂ ତାଙ୍କର ଅନୁଗାମୀମାନେ ମିଶି ଏହା ବିରୁଦ୍ଧରେ ଦୃଢ଼ ସ୍ୱର ଉତ୍ତୋଳନ କରନ୍ତି । ଏପରି ଏକ ଶିକ୍ଷାକୁ ମିଷ୍ଟି ଆବରଣ ଶିକ୍ଷା (Sugur—Coating education) ବୋଲି ସେମାନେ ଅଭିହିତ କରନ୍ତି । ସେମାନେ କହନ୍ତି—"Sugar coa·ing, they said meant humoring and spoiling the child so that serious effort was never called into play, with the result that a weak character must be expected ।'ଏମାନେ ଶିଶୁର ଉଦ୍ୟମ (effort) ଉପରେ ଗୁରୁତ୍ୱ ଆରୋପ କଲେ । ଅନ୍ୟପକ୍ଷରେ ଗ୍ରିଲ୍ସ୍ ଡ଼ି ଗାର୍ମୋ ଏବଂ ଫ୍ରାଙ୍କ ମାକ୍‌ମୁରି ଇତ୍ୟାଦି ଶିଶୁର 'ଉଦ୍ୟମ' ଉପରେ ଗୁରୁତ୍ୱ ନ ଦେଇ ବରଂ ତାହାର ଦୃଢ଼ ପ୍ରତିବାଦ କଲେ । ସେମାନେ କହିଲେ—

(2) "That interests was in fact the sole guarantee of attention and learnings, and that the enforced 'effort' of the Harris Group must build either a dull and docile character or a rebellious one, neither of which was desirable.

---

(1) Deweys' influence o › education writren by W.H. kilpatrick-Phil of J. Dewey—Page 454-455.

(2) Ibd-455.

ହାର୍ବାର୍ଟିୟାନ ଗୋଷ୍ଠୀଙ୍କର ଉପରୋକ୍ତ ମତାମତ ଶ୍ରେୟସ୍କର ବୋଲି ଅନେକ ବିଚାରୁଥାଆନ୍ତି । କାରଣ ଶିକ୍ଷା ଗ୍ରହଣରେ ଶିଶୁର ଉତ୍ସାହ ଏବଂ ଆନନ୍ଦ ନ ରହିଲେ ଶିଶୁ କିଛି ହେଲେ ପ୍ରକୃତ ଭାବେ ଶିକ୍ଷା କରିପାରିବ ନାହିଁ ; କିନ୍ତୁ ଏ କ୍ଷେତ୍ରରେ ଶିକ୍ଷକଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିବାରୁ ଶିଶୁର ଅଧ୍ୟୟନରେ ତାର ସ୍ୱାଧୀନତା ରହିବ ନାହିଁ ବୋଲି ହାରଣ ଗୋଷ୍ଠୀ ଗାଇବୁଲୁଥାନ୍ତି । ଏପରି ଏକ ସାମାଜିକ ତଥା ଶିକ୍ଷାଗତ ପରିବେଶ ଏବଂ କନ୍ଦଳ ମଧ୍ୟରେ ଡିଉଇଙ୍କର ଶିକ୍ଷା ଦର୍ଶନର ଶୁଭାରମ୍ଭ ଘଟିଥିଲା ।

## (ଗ) "ଶିକ୍ଷା ଏବଂ ସମାଜ"

ଅଧ୍ୟାପକ ଡିଉଇଙ୍କ ମତରେ 'ଶିକ୍ଷା' ଏକ ନିରବଚ୍ଛିନ୍ନ ଧାରା, ଯାହା ମଧ୍ୟରେ କି ମନୁଷ୍ୟ ସ୍ୱୀୟ ସାମାଜିକ ଗୋଷ୍ଠୀଗୁଡ଼ିକର ଅସ୍ତିତ୍ୱ ରକ୍ଷା କରି ଆସିଛି । ଏକଥା ସେ ତାଙ୍କର ପୁସ୍ତକ "ଗଣତନ୍ତ୍ର ଏବଂ ଶିକ୍ଷା"ରେ ସ୍ପଷ୍ଟ ଭାବେ ବ୍ୟକ୍ତ କରିଛନ୍ତି । ସେ ପୁଣି କହନ୍ତି ଯେ 'ବ୍ୟକ୍ତି' ସାମାଜିକ-ଗୋଷ୍ଠୀଗତ ଜୀବନରେ ହଜିଯାଏ ନାହିଁ, ସେ ବରଂ ସବୁବେଳେ ତାର ସ୍ୱାଧୀନତା, ସ୍ୱାଧୀନ ବିଚାର ଅକ୍ଷୁର୍ଣ୍ଣ ରଖିଥାଏ । ବ୍ୟକ୍ତି ଏବଂ ସମାଜ ସବୁବେଳେ ପରସ୍ପର ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଏବଂ ପରିପୂରକ ହୋଇ ପରସ୍ପରର ସମୂହ ଉନ୍ନତି ବିଧାନ କରିଥାନ୍ତି ।

ଅଧ୍ୟାପକ ଡିଉଇ ଦର୍ଶନକୁ ସମାଜର ହିତରେ ବିନିଯୋଗ କରିବାକୁ ପୂର୍ବରୁ କହିଆସିଛନ୍ତି । ଦର୍ଶନ ସର୍ବଦା ପରିସ୍ଥିତିକୁ ବିଚାର କରି ଓ ବିଶ୍ଳେଷଣ କରି ସମାଜରେ ସେଗୁଡ଼ିକର ସମାଧାନ କରିବା ସଙ୍ଗେ ସଙ୍ଗେ ସାମାଜିକ ସଂହତି ମଧ୍ୟ ରକ୍ଷା କରେ । ଶିକ୍ଷା ଏବଂ ସଂହତି ଦର୍ଶନର ଅବଦାନ ମାତ୍ର । ଡିଉଇ ସମାଜର ସମସ୍ତ ସମସ୍ୟାବଳୀକୁ ସମାଜତତ୍ତ୍ୱ ଦୃଷ୍ଟିରୁ ବିଚାର ନ କରି ସାମାଜିକ ଦୃଷ୍ଟିକୋଣରୁ ବିଚାର କରିଛନ୍ତି । ତେଣୁ ଶିକ୍ଷା ସମସ୍ତ ସାମାଜିକ ସମସ୍ୟାଗୁଡ଼ିକୁ ସାମାଜିକ ଦୃଷ୍ଟିକୋଣରୁ ବିଚାର କରି ସେଗୁଡ଼ିକର ନୂତନ ଦିଗ୍‌ଦର୍ଶନ ସ୍ଥିର କରିବ । ଏହି ହେତୁ ଶିକ୍ଷା, ଦର୍ଶନ ଏବଂ ସମସ୍ତ ସାମାଜିକ ସମସ୍ୟା ପରସ୍ପର ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ ବୋଲି ଅଧ୍ୟାପକ ଡିଉଇ ମତପୋଷଣ କରିଆସିଛନ୍ତି ।

ପ୍ରଥମତଃ ଡିଉଇଙ୍କ ମତରେ 'ଶିକ୍ଷା' ସର୍ବଦା ସମାଜଭିତ୍ତିକ ହେବା ଉଚିତ । ତେଣୁ ସେ କହନ୍ତି ଯୋଗାଯୋଗ ଭିତ୍ତିରେ ମଧ୍ୟ ଶିକ୍ଷା ସମାଜର ପ୍ରତ୍ୟେକ କୋଣରେ ଏବଂ ସ୍ତରରେ ପହଞ୍ଚିବା ଆବଶ୍ୟକ । ଅର୍ଥାତ୍ ଶିକ୍ଷାର ସମସ୍ତ ତତ୍ତ୍ୱ ଏବଂ ସମସ୍ତ ଉଦ୍ଦେଶ୍ୟ ସର୍ବଦା ସାମାଜିକ ହେବା ଉଚିତ ।

ଦ୍ୱିତୀୟରେ ଶିକ୍ଷା ଏକ ସାମାଜିକ ଧାରା ରୂପେ ଗୃହୀତ ହେବା ବିଧେୟ । ଶିକ୍ଷାର ଏହି ଧାରା ଏବଂ ସ୍ରୋତରେ ଶିଶୁ ଯେପରି ସମାଜରେ ସବୁ ଘଟଣାର ଅର୍ଥ ଏବଂ ମୂଲ୍ୟବୋଧ ହୃଦୟଙ୍ଗମ କରି ନିଜକୁ ଗଢ଼ି ତୋଳିପାରିବ ସେଥିପ୍ରତି ଦୃଷ୍ଟି ଦେବାକୁ ପଡ଼ିବ ।

ତୃତୀୟତଃ ଶିକ୍ଷା ଦ୍ୱାରା ଶିଶୁକୁ ଏବଂ ତାର ପରିବେଶ ତଥା ପାରିପାର୍ଶ୍ୱିକ ଅବସ୍ଥାକୁ ଅନୁଧ୍ୟାନ କରି ଶିଶୁକୁ ଶିକ୍ଷାଦାନ ଦେଉଥିବା ସଙ୍ଗେ ସଙ୍ଗେ ଶିଶୁର ଦୈହିକ ଏବଂ ମାନସିକ ଅବସ୍ଥାର ଉନ୍ନତି ବିଧାନ କରିବା ଶିକ୍ଷାର ଅନ୍ୟତମ ଲକ୍ଷ୍ୟ ହେବା ଉଚିତ । କୋମଳମତି ଶିଶୁର 'ମନ' ଏକ କାଦୁଅ ପିଣ୍ଡୁଳା ପରି । ଶିଶୁର ପ୍ରବୃତ୍ତିକୁ ଲକ୍ଷ୍ୟରଖି ଶିକ୍ଷା ଦ୍ୱାରା ଶିଶୁକୁ ଗଢ଼ିବାକୁ ପଡ଼ିବ । ତାହାହେଲେ ଯାଇ ଶିଶୁ ସମାଜର ହିତାର୍ଥେ ପ୍ରସ୍ତୁତ ହୋଇପାରିବ ଏବଂ ସାମାଜିକ ଜୀବନଯାପନ କରି ଶିଖିବ । ତେଣୁ ଡିଉଇଙ୍କ ମତରେ "What nutrition and reproduction are to the physiological life, education is to social life" * (1)

ଚତୁର୍ଥତଃ ଡିଉଇ କହନ୍ତି 'ଶିକ୍ଷା'ଦ୍ୱାରା ଗୋଷ୍ଠୀଗତ ଜୀବନ ଉନ୍ନତ ଏବଂ ମାର୍ଜିତ ହୋଇଥାଏ । ଶିକ୍ଷା ଗୋଷ୍ଠୀଗତ ଜୀବନକୁ ଅନୁଧ୍ୟାନ ଏବଂ ଅନୁଶୀଳନ କରିବାକୁ ସୁଯୋଗ ଏବଂ ସୁବିଧା ଦେଇଥାଏ । ଫଳତଃ ଗୋଷ୍ଠୀଗତ ଜୀବନରୁ ସମସ୍ତ ଭୁଲଭ୍ରାନ୍ତି ଅପସରି ଯାଇ ଗୋଷ୍ଠୀଗତ ଜୀବନ ଉନ୍ନତ ଏବଂ ବିକାଶ ପଥରେ ଅଗ୍ରଗାମୀ ହୋଇପାରେ ।

## (ଘ) "ଶିକ୍ଷା ଏବଂ ଗଣତନ୍ତ୍ର"

ଅଧ୍ୟାପକ ଡିଉଇଙ୍କ ମତରେ—"The conception of education as a social process and function has no definite meaning until we define the kind of society we have in mind".* (2)

ଡିଉଇ ପୁଣି କହନ୍ତି ଯେ ତାଙ୍କର ଶିକ୍ଷାପଦ୍ଧତି କେବଳ 'ଗଣତାନ୍ତ୍ରିକ ସମାଜ ପାଇଁ ଅଭିପ୍ରେତ । ଏକ ଗଣତାନ୍ତ୍ରିକ ସମାଜ ବିହୁନେ ତାଙ୍କର ଶିକ୍ଷାପଦ୍ଧତିର ପ୍ରବର୍ତ୍ତନ ଅସମ୍ଭବ । ତେଣୁ ସେ କହନ୍ତି ଯେ "Democracy is the basis of all social institutions—" ଗଣତନ୍ତ୍ରର ମୂଳମନ୍ତ୍ର ଏକ ନୈତିକ ମାନଦଣ୍ଡ । ସେ କହନ୍ତି— ନୀତି ଏବଂ ଗଣତାନ୍ତ୍ରିକ ଭାବଧାରାର ବିକାଶ ଘଟେ କେବଳ ପ୍ରକୃତ ଶିକ୍ଷା ଯୋଗୁଁ ; ତେଣୁ ଅଧ୍ୟାପକ ଡିଉଇ ଗଣତାନ୍ତ୍ରିକ ଜୀବନର କେତେକ ନିର୍ଦ୍ଦିଷ୍ଟ ନିୟମର ବିଧାନ କରିଛନ୍ତି ।

ପ୍ରଥମତଃ ଗଣତନ୍ତ୍ର ବ୍ୟକ୍ତିର ନିଜସ୍ୱ ଅନ୍ତରଙ୍ଗ ମୂଲ୍ୟବୋଧ ଏବଂ ଆତ୍ମସମ୍ମାନ ମୂଲ୍ୟବୋଧକୁ ସ୍ୱୀକାର କରିବା ପାଇଁ ଶିକ୍ଷା ଦେଇଥାଏ । ଶିଶୁ ଏକ ବିଶିଷ୍ଟ ବ୍ୟକ୍ତି-ବିଶେଷ ଏବଂ ତାର ବ୍ୟକ୍ତିତ୍ୱର ପୂର୍ଣ୍ଣାଙ୍ଗ ବିକାଶ କେବଳ ଗଣତାନ୍ତ୍ରିକ ସମାଜରେ ହିଁ ସମ୍ଭବ ।

---

* (1) Democracy and Education by J. Dewey—Page-11

* (2) Democracy & Education—written by J. Dewey—Page-112

ତେଣୁ ଡିଉଇ କହନ୍ତି ଶିକ୍ଷାନୁଷ୍ଠାନମାନଙ୍କରେ ଶିଶୁକୁ ଏକ ପଠନ ସାମଗ୍ରୀ ବୋଲି ମନେ ନ କରି, ତାକୁ ଏକ 'ସମ୍ମାନିତ ଶକ୍ତିମାନ' ବ୍ୟକ୍ତି ବିଶେଷ ରୂପେ ବୁଝିବାକୁ ପଡ଼ିବ ।

ଦ୍ୱିତୀୟତଃ ଗଣତାନ୍ତ୍ରିକ ସମାଜରେ ଶିଶୁକୁ ଏକ ଉଦ୍ଦେଶ୍ୟ କିମ୍ବା ଲକ୍ଷ୍ୟ ରୂପେ ବିବେଚନା କରିବାକୁ ପଡ଼ିବ । ଶିଶୁକୁ କେବଳ କୌଣସି ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟର ଉପାୟ ବା ନିମିତ୍ତ ରୂପେ ଗ୍ରହଣ କରିନେବା ଉଚିତ ହେବ ନାହିଁ । ବ୍ୟକ୍ତିର ହିତରେ ସମାଜର ହିତ ନିହିତ । ସମାଜର ସାବଜୀନ ଅନୁଭୂତିର କେନ୍ଦ୍ରସ୍ଥଳ ପ୍ରତ୍ୟେକ ବ୍ୟକ୍ତି ବିଶେଷ ; ତେଣୁ ବ୍ୟକ୍ତିର ଅନ୍ତରଙ୍ଗ ମୂଲ୍ୟବୋଧ ଏବଂ ଆତ୍ମସମ୍ମାନ ଜ୍ଞାନରୁ ସାମାଜିକ ମୂଲ୍ୟବୋଧ ନିରୂପିତ ହୋଇଥାଏ । ଜାତି, ଧର୍ମ, ପଦବୀ ଏବଂ ବୃତ୍ତି ନିର୍ବିଶେଷରେ ଶିଶୁର ସମସ୍ତ ପ୍ରକାର ସୁପ୍ତ ଶକ୍ତିର ବିକାଶ ଘଟାଇବାକୁ ପଡ଼ିବ । ଏହାହିଁ ଗଣତନ୍ତ୍ରର ଏକ ପରମ ଉଦ୍ଦେଶ୍ୟ ବୋଲି ଡିଉଇ କହନ୍ତି । ଏତଦ୍‌ବ୍ୟତୀତ ଶିଶୁ ଯେପରି ଜୀବନର ପ୍ରତ୍ୟେକ ମୂଲ୍ୟବୋଧକୁ ହୃଦୟଙ୍ଗମ କରିବା ପାଇଁ ସକ୍ଷମ ହୁଏ ଏବଂ ଭବିଷ୍ୟତରେ ନୂତନ ମୂଲ୍ୟବୋଧମାନ ସୃଷ୍ଟି କରିପାରେ ସେଥିପ୍ରତି ମଧ୍ୟ ସଯତ୍ନ ଓ ତୀକ୍ଷ୍ଣ ଦୃଷ୍ଟି ଦେବାକୁ ପଡ଼ିବ ।

ତୃତୀୟତଃ ଯେଉଁ ସମାଜ ବ୍ୟକ୍ତିବିଶେଷକୁ ଏପରି ମର୍ଯ୍ୟାଦା ଏବଂ ସମ୍ମାନ ଦେଇପାରେ, ସେ ସମାଜ ମଧ୍ୟ ବ୍ୟକ୍ତିର ମତାନୈକ୍ୟକୁ ସମ୍ମାନ ଦେବା ଉଚିତ । କାରଣ ଡିଉଇଙ୍କ ମତରେ *(1) Diversity of stimulation means novelty, and novelty means challenge to thought."ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ଗଣତନ୍ତ୍ରରେ ବ୍ୟକ୍ତିର ମତାନୈକ୍ୟ ପରୋକ୍ଷରେ ସମାଜର ଏକ ଆଶୀର୍ବାଦ ସ୍ୱରୂପ । ଏସବୁ ସତ୍ୟର ଗୁରୁତ୍ୱ ଏବଂ ଯୌକ୍ତିକତା କେବଳ ଶିକ୍ଷାଦ୍ୱାରା ହିଁ ବ୍ୟକ୍ତି ଉପଲବ୍ଧି କରିପାରିବ । ତେଣୁ ଡିଉଇ ସାହେବ କହନ୍ତି *(2)"Since democratic society repudiates external authority, it must find a substitute in voluntary disposition and interest, these can be created by education."

ଚତୁର୍ଥତଃ ଡକ୍ଟର ଡିଉଇଙ୍କ ମତରେ ଶିକ୍ଷାର ପ୍ରକୃତ ପ୍ରଣାଳୀର କାର୍ଯ୍ୟକାରିତା ସମ୍ଭବ ହୋଇଥାଏ କେବଳ ଏକ ଗଣତାନ୍ତ୍ରିକ ସମାଜରେ । ଗଣତାନ୍ତ୍ରିକ ସମାଜରେ ମତଭେଦ ଏବଂ ମତାନୈକ୍ୟ ଅନିବାର୍ଯ୍ୟ ହୋଇଥାଏ ; କିନ୍ତୁ ଏହା ସତ୍ତ୍ୱେ ସବୁପ୍ରକାର ମତଭେଦ ଏବଂ ମତାନୈକ୍ୟର ସୁସମାଧାନ ହିଁ କେବଳ ଗଣତାନ୍ତ୍ରିକ ସମାଜରେ ହିଁ ସମ୍ଭବ

---

* (1) Democracy & Education written by J. Dewey—Page-98

* (2) Ibd—Page-98-99

ହୋଇଥାଏ । କାରଣ ଗଣତନ୍ତ୍ରରେ ବିଚାର, ଆଲୋଚନା ଏବଂ ସର୍ବୋପରି ଆପୋଷ ମିଳାମିଶାର ବହୁତ କ୍ଷେତ୍ର ଥାଏ ।

ଅବଶେଷରେ ଡିଉଇ କହନ୍ତି ଯେ, ଯେଉଁଠାରେ ମୁଷ୍ଟିମେୟ ଲୋକ ଧନଦୌଲତ କମାଇବାରେ ଧୂରନ୍ଧର ହୋଇଯାଇଛନ୍ତି (ଯଥା ଆମେରିକା) ଏବଂ ଅନ୍ୟମାନଙ୍କୁ ସେମାନଙ୍କର ଜନ୍ମଗତ ମାନବିକ ଅଧିକାରରୁ ବଞ୍ଚିତ କରିଛନ୍ତି, ସେସବୁ ସମାଜରେ ଗଣତାନ୍ତ୍ରିକ ଉପାୟରେ ସମସ୍ତ ପ୍ରକାର ସମତା ଏବଂ ସାମ୍ୟ ପ୍ରତିଷ୍ଠା କରିବାକୁ ଗଲେ ପ୍ରଥମେ ଶିକ୍ଷାକୁ ଏକ ଅବଲମ୍ବିତ ଉପାୟ କିମ୍ବା ଅସ୍ତ୍ର ରୂପେ ଗ୍ରହଣ କରିବାକୁ ପଡ଼ିବ । ତେଣୁ ଡିଉଇଙ୍କର ଶିକ୍ଷା ଏବଂ 'ଗଣତନ୍ତ୍ର' ପରସ୍ପର ଅଭିନ୍ନ ତଥା ନିର୍ଭରଶୀଳ ହେବା ସଙ୍ଗେ ସଙ୍ଗେ ଅମଲାତନ୍ତ୍ର ଏବଂ ଏକଛତ୍ରବାଦ ବିରୁଦ୍ଧରେ ବଜ୍ରଗମ୍ଭୀର ସ୍ୱରଉତ୍ତୋଳନ କରିଛନ୍ତି । ଠିକ୍ ଏହି ଦୃଷ୍ଟିରୁ ଜନ୍ ଚାଇଲଡ୍ସ କହନ୍ତି—* (1) "It is Dr. Dewey's faith that this social transformation can be achieved by co-operative peaceful economic and political means, provided education can be kept free to carry on its functions of criticism and construction."

## (ଙ) "ଶିକ୍ଷା, ମନ ଏବଂ ପ୍ରକୃତି"

ଅଧ୍ୟାପକ ଡିଉଇ କହନ୍ତି ପରୀକ୍ଷଣ ପ୍ରକୃତିବାଦ କିମ୍ବା ପ୍ରାୟୋଗିକ ପ୍ରକୃତିବାଦ ଦ୍ୱାରା ଯେ କେବଳ ଶିଶୁ 'ମନର' ପୁନର୍ଗଠନ କରାଯାଇପାରେ ସେତିକି ନୁହେଁ, ଏହାଦ୍ୱାରା ମଧ୍ୟ ଯେଉଁ ପ୍ରାକୃତିକ ଜଗତର କୋଳରେ ଆମେ ସବୁ ଜୀବନ ଧାରଣ କରି ରହିଛୁ, ତାହାର ମଧ୍ୟ ପୁନର୍ଗଠନ କରାଯାଇପାରେ । ଡିଉଇଙ୍କ ମତରେ ଏ ଜଗତରେ ମନୁଷ୍ୟର ଜୀବନ ସର୍ବଦା କାତରତାପୂର୍ଣ୍ଣ, ଦୁଃଖମୟ, ଯନ୍ତ୍ରଣାଦାୟକ, ବିପଦ ସଂକୁଳ, ଆଶ୍ଚର୍ଯ୍ୟଜନକ, କୌତୂହଳମୟ ଏବଂ ସର୍ବୋପରି ସୁନ୍ଦର, ଉଲ୍ଲାସଦାୟକ, ପରିହାସପୂର୍ଣ୍ଣ, ସାନ୍ତ୍ୱନାଦାୟକ, ଚମତ୍କାର ଏବଂ ମନୋମୁଗ୍ଧକର ଅଟେ । ଶିଶୁର ବହିଷ୍ଠ ଜୀବନ ସର୍ବଦା ପ୍ରକୃତି କୋଳରେ ଲାଳିତ-ପାଳିତ ଏବଂ ପ୍ରକୃତିହିଁ ତାର ପିଣ୍ଡ ଓ ପ୍ରାଣ । ପ୍ରକୃତିରୁ ସେ ତାର ଖାଦ୍ୟ, ପେୟ, ବସ୍ତ୍ର ଏବଂ ବାସ ଇତ୍ୟାଦିର ଆୟୋଜନ କରିଥାଏ । ତେଣୁ ଶିଶୁ ପ୍ରକୃତି ମାଧ୍ୟମରେ ଶିକ୍ଷା କରି, ପ୍ରକୃତିକୁ ତାର ନିଜର କାର୍ଯ୍ୟରେ ଏବଂ ହିତରେ ବିନିଯୋଗ କରି ନିଜର ଜୀବନକୁ ସୁଖମୟ, ଶାନ୍ତିମୟ, ସମୃଦ୍ଧିଶୀଳ ତଥା ପ୍ରଗତିଶୀଳ କରିବା ଉଚିତ ।

---

* (1) Essay on Educational Phil of Dewey—written by J. L. Childs—Phil of J. Dewey—Page—443.

* (1) Dewey regards mind as quality of behaviour. The organism "is the part and parcel of the course of events."

ପ୍ରଥମେ ଅଧ୍ୟାପକ ଡିଉଇଙ୍କ ସମ୍ବନ୍ଧରେ ଏତିକି କୁହାଯାଇପାରେ ଯେ, ଡିଉଇଙ୍କ ଉପରେ 'ଚାର୍ଲସ୍ ଡାରୱିନ'ଙ୍କର ଯଥେଷ୍ଟ ପ୍ରଭାବ ପଡ଼ିଥିଲା । ଡିଉଇଙ୍କ ମତରେ ଶିଶୁର ମାନସିକ, ନୈତିକ ଏବଂ ଶାରୀରିକ ବିକାଶ 'ପ୍ରକୃତିର' ଆଙ୍ଗିକ ପରିବର୍ତ୍ତନର ଏକ ଅଭିବ୍ୟକ୍ତି ମାତ୍ର । ଶରୀରର ବିକାଶରେ ଯେପରି ପ୍ରାକୃତିକ ପ୍ରଭାବ ସୁସ୍ପଷ୍ଟ, ସେହିପରି ଶିଶୁର ମାନସିକ ବିକାଶର ମୂଳଭିତ୍ତି ପ୍ରାକୃତିକ ପ୍ରଭାବ । ପୁରାତନ ଦର୍ଶନ ଏବଂ ଧର୍ମତତ୍ତ୍ୱିକ ମନ ଓ ଶରୀରର ଦ୍ୱୈତବାଦକୁ ଡିଉଇ ସ୍ୱୀକାର କରନ୍ତି ନାହିଁ । ଜନ ରୁଇଲାଣ୍ଡସ୍ଙ୍କ ମତରେ *(2)'Dewey rejects, therefore, the dualistic presupposition of cla sical philosophy and theology that experience centres in or gathers about, or proceeds from centre or a subject which is out side the course of natural existences and setover against it."

ଶିଶୁ ସର୍ବଦା କାର୍ଯ୍ୟନିର୍ଘଣ୍ଟ, ଅଭ୍ୟାସ, ପୁସ୍ତକ ବୋଝାର ଦାସ ନ ହୋଇ ନିଜର ଇଚ୍ଛା, ଆଗ୍ରହ, ରୁଚି ଏବଂ ଆନନ୍ଦ-ଉତ୍ସାହକୁ ନେଇ ଗଢ଼ିଉଠୁ, ଏହାହିଁ ଡିଉଇଙ୍କର ଥିଲା ମୁଖ୍ୟ ଉଦ୍ଦେଶ୍ୟ । ଶିଶୁକୁ ପଶୁଭବେ ଶିକ୍ଷା ଦେବାକୁ ଡିଉଇ ଘୃଣା କରି ଆସିଛନ୍ତି । ଶିଶୁର ସୃଜନୀଶକ୍ତି, ତା'ର କଳା ଏବଂ ବିଜ୍ଞାନପ୍ରତି ଆଗ୍ରହ ଇତ୍ୟାଦିକୁ କଦାପି ଉପେକ୍ଷା କରାଯାଇ ନ ପାରେ ।

ଡିଉଇ କହନ୍ତି ଶିଶୁ କେବଳ ପଠନୋପକରଣ କିମ୍ବା ପଠନସ୍ଥ ବିଷୟବସ୍ତୁଗୁଡ଼ିକ ଦ୍ୱାରା ଶିକ୍ଷା ଲାଭ କରିବା ଉଚିତ ନୁହେଁ । ଯେ ମଧ୍ୟ ଶିକ୍ଷା ମାଧ୍ୟମରେ ଭାଷାର ପ୍ରୟୋଗ, ଭାଷାର ଅର୍ଥ ଶବ୍ଦ ଅଥବା ପଦର ତାତ୍ପର୍ଯ୍ୟ ଇତ୍ୟାଦି ଭଲଭାବେ ବୁଝି ସେଗୁଡ଼ିକ ବ୍ୟବହାର କରି ଶିଖିବା ଉଚିତ । ଏହା ବ୍ୟତୀତ ଶିଶୁର ଶିକ୍ଷା ଏବଂ କାର୍ଯ୍ୟରେ ମଧ୍ୟ ତାରତମ୍ୟ ରହିବା ଉଚିତ ନୁହେଁ ।

---

* (1) Ibd—page—424.

* (2) J. Dewey creative intelligence—Page—30 (and Phil of J. Dewey Page—422 )

ପ୍ରଥମତଃ ପଠନ ନିଷ୍ପତ୍ତି-ରଚନାପୂର୍ଣ୍ଣ ହେବା ପରିବର୍ତ୍ତେ, ପଠନ ନିତାନ୍ତ ସକ୍ରିୟ ହେବା ବାଞ୍ଛନୀୟ । ଦ୍ୱିତୀୟତଃ ଶିଶୁର ପ୍ରାକୃତିକ ଏବଂ ସାମାଜିକ ପରିବେଶ ସହିତ ବିଦ୍ୟାଳୟଗୁଡ଼ିକର ଅନ୍ୟୋନ୍ୟ କ୍ରିୟା ଶୀଘ୍ର ପ୍ରାଣବନ୍ତ ଏବଂ ବଳିଷ୍ଠ ହେବା ଉଚିତ । ତାହାହେଲେ ଯାଇ ଶିଶୁ ତାର ଜୀବନରେ ସମସ୍ତ ପ୍ରକାର ପରିସ୍ଥିତିଗୁଡ଼ିକୁ ଆୟତ୍ତକରି ସେସବୁକୁ ନିଜର ସୁଖ-ସମୃଦ୍ଧିରେ ବିନିଯୋଗ କରି ଏକ ସୁଖୀ ଏବଂ ସମୃଦ୍ଧ ଜୀବନଯାପନ କରିବାକୁ ସକ୍ଷମ ହେବା ପରେ ଯାଇ ଶିକ୍ଷାଲାଭର ସାର୍ଥକତା ଉପଲବ୍ଧି କରିପାରିବ । ଏପରି ଏକ ବିସ୍ମୟନୀୟ, କାତରତାପୂର୍ଣ୍ଣ, ଭୟଙ୍କର ତଥା ବିପଦସଙ୍କୁଳ ଦୁନିଆ ସହିତ ନିଜକୁ ସମାୟୋଜିତ କରି ଜୀବନଯାପନ କରିବା ଶିଶୁ (ମନୁଷ୍ୟ) ପକ୍ଷରେ ଏକ ଚରମ ପରୀକ୍ଷା । ଡିଉଇ ସ୍ୱଭାବତଃ ଡାରୁଇନ୍‌ଧ୍ୟାନ ହୋଇଥିବାରୁ ବହୁ କ୍ଷେତ୍ରରେ ସେ ଡାରୁଇନ୍‌ଙ୍କ ମତାମତକୁ ମାନିନେଇଛନ୍ତି । ଡାରୁଇନ କହନ୍ତି—*(1) "The conjuction of problematic and determinate characters in nature renders every existence as well as every idea and human act, an experiment in fact, even though not in design."

ପ୍ରୋ. ଡିଉଇଙ୍କ ମତରେ ଯେ ହେତୁ ଏପରି ଏକ ଧରାରେ ଜୀବନ ଧାରଣ କରି ବଞ୍ଚିରହିବା ଏକ ବିଧିବଦ୍ଧ ନିର୍ବାଚିତ ଏବଂ ସମାୟୋଜିତ ଅନ୍ତରଙ୍ଗ ଧାରା, ସେହି ହେତୁ ମନୁଷ୍ୟ ନିଜକୁ ଚେତନଶୀଳ ଭାବରେ ଏ ଧରା ସହିତ ସମାୟୋଜିତ (adjustment) ହେବାକୁ ପଡ଼ିବ । *(2) S nce living is intrinsically a process of selective adjustment. Dr. Dewey believes that these adjustments should be made consciously."

ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ, ଅଧ୍ୟାପକ ଡିଉଇଙ୍କ ଶିକ୍ଷାତତ୍ତ୍ୱ ମନୁଷ୍ୟର ବାସ୍ତବ ଜୀବନ ଏବଂ ତାର ଅସ୍ତିତ୍ୱ ସହିତ ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଅତଏବ ଏ ଦୁଇଟିର ସୁସମନ୍ୱିତ କ୍ରିୟାର ସାଫଲ୍ୟ କେବଳ ଉକ୍ତ ଶିକ୍ଷାର ପ୍ରଣାଳୀ ଏବଂ ବଞ୍ଚିରହିବାର ପ୍ରଣାଳୀ ଉପରେ ପୂର୍ଣ୍ଣତଃ ନିର୍ଭର କରେ । ପ୍ରୋ. ଡିଉଇ କହିଛନ୍ତି—*(3) "Problems are solved where they arise—namely in action, in the adjustment of behaviour. But, for good or for evil, they can be solved only with method, and ultimately method is intelligence and intelligenc is method."

* (1) Experince and Nature Darwin—Page-70
* (2) Phil of J. Dewey —Page-429
* (3) Influence of Darwinian Phil—Page-44

ଶେଷରେ ଡିଉଇ ଦୃଢ଼ ସ୍ୱରରେ ଘୋଷଣା କରିଛନ୍ତି ଯେ, ଜୀବନ ସର୍ବଦା ପ୍ରଗତିଶୀଳ ଓ ଅଗ୍ରଗାମୀ ଏବଂ ଯାହା ପ୍ରଗତିଶୀଳ ଏବଂ ଅଗ୍ରଗାମୀ ତାହା ହିଁ ଜୀବନ । ତାଙ୍କ ମତରେ ଶିକ୍ଷାର ଧାରା ଶିକ୍ଷାର ଉଦ୍ଦେଶ୍ୟକୁ ନାଶିପାରେ ନାହିଁ । ବରଂ ଶିକ୍ଷାର ଉଦ୍ଦେଶ୍ୟ ଶିକ୍ଷାରେ ନିହିତ । ଦ୍ୱିତୀୟତଃ ପ୍ରକୃତ ଓ ସମାଜକୁ ପୁନର୍ଗଠନ ଏବଂ ରୂପାନ୍ତର କରିବା ହିଁ ଶିକ୍ଷାର ନିରବଚ୍ଛିନ୍ନ ଧାରା ଏବଂ ଲକ୍ଷ୍ୟ । * (1) Our net conclusion is that life is development, and that developing, growing, is life. Translated into its equivalents, this means (i) that the educational process has no end beyond itself, it is its own end, and that (ii) the educational process is one of continued reorganising, reconstructing, transferming."

---

* (1) Democracy & Education written by J. Dewey—Page-59

## ଚତୁର୍ଥ ପରିଚ୍ଛେଦ

# ଡିଉଇଙ୍କ ନୀତିଶାସ୍ତ୍ର

## (କ)

ପଣ୍ଡିତ ବାର୍ଟ୍ରାଣ୍ଡ ରସେଲ କହନ୍ତି, *(1) "In Dewey, as in current sciences and ethics, there is a pervasive quasi—Hegelian tendency to disolve the individual into social functions, as well as everything substantial and actual into something relative and transitional"—ଅଧ୍ୟାପକ ଡିଉଇ ରସେଲଙ୍କର ଉପରୋକ୍ତ ମତର ପ୍ରକୃତ ପୃଷ୍ଠପୋଷକ ଅଟନ୍ତି । ଡକ୍ଟର ଡିଉଇ ତାଙ୍କର 'ସତ୍ୟାନୁସନ୍ଧାନ' ପୁସ୍ତକରେ ପ୍ରୟୋଗବାଦୀ ନୀତିଶାସ୍ତ୍ର ଉପରେ ପର୍ଯ୍ୟାଲୋଚନା କରି ଯେଉଁ ପ୍ରବନ୍ଧଟି ଲେଖିଯାଇଛନ୍ତି ସେଥିରେ ରସେଲଙ୍କ ପ୍ରୋକ୍ତ ମତାମତଟି ଉପରେ ଡିଉଇ ବିଶେଷ ଭାବରେ ସୁସ୍ପଷ୍ଟ ଆଲୋଚନା କରିଛନ୍ତି । ଏତଦ୍‌ଭିନ୍ନ ଡକ୍ଟର ଡିଉଇ ତାଙ୍କ "ମନୁଷ୍ୟର ପ୍ରକୃତି ଏବଂ ଚରିତ୍ର" ପୁସ୍ତକରେ ମଧ୍ୟ ନିଜର ନୀତିଶାସ୍ତ୍ର ଉପରେ ବିଶଦ ଆଲୋଚନା କରିଛନ୍ତି ।

କତିପୟ ପୁରାତନ ଏବଂ ଆଧୁନିକ ଦାର୍ଶନିକମାନେ ଏକ ପରମ, ଅବିନାଶୀ, ଚିରନ୍ତନ ଏବଂ ଆଧ୍ୟାତ୍ମିକ ମୂଲ୍ୟବୋଧକ ନୀତିଶାସ୍ତ୍ରର ସ୍ୱାତନ୍ତ୍ର୍ୟ ବୋଲି ଅଭିହିତ କରିଆସିଛନ୍ତି । ଖ୍ରୀଷ୍ଟିୟାନ ତଥା ବିଶ୍ୱର ଅନ୍ୟାନ୍ୟ ଧର୍ମଶାସ୍ତ୍ରମାନେ ମଧ୍ୟ ଏପରି ଏକ ପରମମୂଲ୍ୟବୋଧ ସ୍ୱୟଂ ପରମେଶ୍ୱରଙ୍କର ଇଚ୍ଛାଶକ୍ତିର ତଥା ସ୍ୱରୂପରୁ ପ୍ରକାଶିତ ବୋଲି ପ୍ରଚାର କରିଯାଇଛନ୍ତି । କିନ୍ତୁ ଅଧ୍ୟାପକ ଡିଉଇ ଏତାଦୃଶ ନୈତିକ ମୂଲ୍ୟବୋଧ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି । ତାଙ୍କ ମତରେ ନୈତିକ ମୂଲ୍ୟବୋଧ କଦାପି ପରମ, ନିରପେକ୍ଷ, ଚିରନ୍ତନ ତଥା ଅବିନାଶୀ ନ ହୋଇ, ଏହା ସର୍ବଦା ଆପେକ୍ଷିକ, ପରିବର୍ତ୍ତିତ, ସାମାଜିକ, ଉତ୍ପାଦକ, ଜୈବିକ ଏବଂ ସର୍ବୋପରି ନଶ୍ୱର କ୍ଷଣସ୍ଥାୟୀ ଅଟେ । ଆଧୁନିକ

---

(1) History of Phil by B. Russel—Page-781

ନୀତିବାଦୀମାନଙ୍କ ମତରେ ଯାହା ବର୍ତ୍ତମାନ ଏବଂ ଭବିଷ୍ୟତ ପାଇଁ ଅଭୀଷ୍ଟ ଏବଂ ଆବଶ୍ୟକ ତାହାହିଁ ବ୍ୟକ୍ତି ସମ୍ମୁଖରେ ମୂଲ୍ୟବାନ । ଏମନ୍ତ ଏକ ମତବାଦକୁ ମଧ୍ୟ ଡିଉଇ ପସନ୍ଦ କରିନାହାନ୍ତି । କାରଣ ଯାହା ଅଭୀଷ୍ଟ ବା ଅଭିଳଷିତ, ତାହା ବାଞ୍ଛିତ ନୁହେଁ କିମ୍ବା ଅଭିପ୍ରେତ ନୁହେଁ । (Which is desired is not desirable.)

ଡିଉଇଙ୍କ ପ୍ରୟୋଗବାଦୀ ନୀତିଶାସ୍ତ୍ର କହେ, ଯାହା ସମସ୍ତଙ୍କ ପାଇଁ ଅଭିପ୍ରେତ ବା ବାଞ୍ଛନୀୟ, ସନ୍ତୋଷଜନକ ଏବଂ ସର୍ବଗ୍ରାହ୍ୟ, ତାହାହିଁ ସମସ୍ତଙ୍କ ପକ୍ଷରେ ଶୁଭଙ୍କର, ମଙ୍ଗଳମୟ ଓ ସତ୍ୟ ଅଟେ । ଉଇଲିୟାମ କେଲିର ରାଇଟ୍‌ଙ୍କ ମତରେ (1) "Instrumental ethics, on the contrary, insists that only what would prove satisfactory in the life of all foreseable consequences to all persons affected can be regarded as satisfactory good and right."

ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ଡିଉଇ ଉପଯୋଗିତାବାଦୀମାନଙ୍କର କାର୍ଯ୍ୟର ପରିଣାମକୁ ମୂଲ୍ୟବୋଧର ମାନରୂପେ ମାନିନେଇଥିଲେ ମଧ୍ୟ ସେମାନଙ୍କର ସୁଖାନୁଭୂତିକୁ ନୀତିଶାସ୍ତ୍ରର ତଦାତ୍ମ୍ୟ ମାନ ରୂପେ ଗ୍ରହଣ କରିନେବାକୁ ପ୍ରସ୍ତୁତ ନୁହନ୍ତି । ତାଙ୍କ ମତରେ ମନୁଷ୍ୟର ଚରିତ୍ର, ମନୁଷ୍ୟର ପରମ ଲକ୍ଷ୍ୟ ଓ ବ୍ୟକ୍ତିଗତ ଅହଂ ବା ଆତ୍ମା ତାହାର ବିମର୍ଶୀ ଅନୁଭୂତି ଦ୍ୱାରା ପରିବର୍ତ୍ତିତ, ପରିମାର୍ଜିତ ଏବଂ ରୂପାନ୍ତରିତ ହୋଇ ନିରବଚ୍ଛିନ୍ନ ଧାରାରେ ଗତି କରୁଛି । ତେଣୁ ଉପରୋକ୍ତ ନିରପେକ୍ଷ, କେବଳ, ଅବିନଶ୍ୱର, ଚିରନ୍ତନ ତଥା ପରମ ମୂଲ୍ୟବୋଧକୁ ଡିଉଇ ସ୍ୱୀକାର କରିନାହାନ୍ତି ।

ଡିଉଇ କହନ୍ତି ବ୍ୟକ୍ତିର ନିମିତ୍ତ ଏବଂ ଲକ୍ଷ୍ୟ, ଉଦ୍ଦେଶ୍ୟ ଏବଂ ଅଭିଳାଷ, ଚରିତ୍ର ଏବଂ ପରିଣାମ ସର୍ବଦା ଏକ ନୈତିକ ପରିବେଶରୁ ଜନ୍ମ ହୋଇଥାଏ ଏବଂ ଏଗୁଡ଼ିକ ପରସ୍ପର ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ ଅଟନ୍ତି । ନୈତିକ ମୂଲ୍ୟବୋଧ ଅଥବା ଆଦର୍ଶ ସବୁବେଳେ ଅଗ୍ରଗାମୀ ଏବଂ ପରିବର୍ତ୍ତନଶୀଳ । ଏହା କୌଣସି ଏକ ଯୁଗ ବା କାଳର ଗଣ୍ଡି ମଧ୍ୟରେ ସୀମାବଦ୍ଧ ହୋଇ ରହେ ନାହିଁ—ନୈତିକ ମୂଲ୍ୟବୋଧ ଏକ ଚଳମାନ ପ୍ରତ୍ୟୟ ; ତେଣୁ ଏପରି ଏକ ନୈତିକ ଆଦର୍ଶବୋଧ ତଥା ମୂଲ୍ୟବୋଧର ସଂଜ୍ଞା ନିରୂପଣ କରିବା କସ୍ମିନ୍ କାଳେ ସମ୍ଭବ ନୁହେଁ । କିନ୍ତୁ ଥୋମାସ ଗ୍ରୀନ କହନ୍ତି ଯେ ଏପରି ଏକ ନୈତିକ ମୂଲ୍ୟବୋଧ ତଥା ଆଦର୍ଶବୋଧ ସ୍ୱୟଂ ପରମ ସତ୍ତାଙ୍କର ଇଚ୍ଛା ମାତ୍ର । ପରନ୍ତୁ ଡିଉଇଙ୍କର ଉପରୋକ୍ତ ମତାମତରୁ ସ୍ପଷ୍ଟ ଅନୁମିତ ହୁଏ ଯେ, ସେ ଥୋମାସ ଗ୍ରୀନ ତଥା ଅନ୍ୟାନ୍ୟ ନବ୍ୟବାଦୀ

---

(1) History of Phil—by W. K. Wright—Page-547

# ଚତୁର୍ଥ ପରିଚ୍ଛେଦ

# ଡିଉଇଙ୍କ ନୀତିଶାସ୍ତ୍ର

## (କ)

ପ୍ରଖ୍ୟାତ ବାର୍ଟ୍ରାଣ୍ଡ ରସେଲ କହନ୍ତି, *(1) "In Dewey, as in current sciences and ethics. there is a pervasive quasi—Hegelian tendency to disolve the individual into social functions, as well as everything substantial and actual into something relative and transitional"—ଅଧ୍ୟାପକ ଡିଉଇ ରସେଲଙ୍କର ଉପରୋକ୍ତ ମତର ପ୍ରକୃତ ପୃଷ୍ଠପୋଷକ ଅଟନ୍ତି । ଡକ୍ଟର ଡିଉଇ ତାଙ୍କର 'ସତ୍ୟାନୁସନ୍ଧାନ' ପୁସ୍ତକରେ ପ୍ରୟୋଗବାଦୀ ନୀତିଶାସ୍ତ୍ର ଉପରେ ପର୍ଯ୍ୟାଲୋଚନା କରି ଯେଉଁ ନିବନ୍ଧଟି ଲେଖିଯାଇଛନ୍ତି ସେଥିରେ ରସେଲଙ୍କ ପ୍ରୋକ୍ତ ମତାମତଟି ଉପରେ ଡିଉଇ ବିଶେଷ ଭାବରେ ସୁସ୍ପଷ୍ଟ ଆଲୋଚନା କରିଛନ୍ତି । ଏତଦ୍‌ଭିନ୍ନ ଡକ୍ଟର ଡିଉଇ ତାଙ୍କ "ମନୁଷ୍ୟର ପ୍ରକୃତି ଏବଂ ଚରିତ୍ର" ପୁସ୍ତକରେ ମଧ୍ୟ ନିଜର ନୀତିଶାସ୍ତ୍ର ଉପରେ ବିଶଦ ଆଲୋଚନା କରିଛନ୍ତି ।

କତିପୟ ପୁରାତନ ଏବଂ ଆଧୁନିକ ଦାର୍ଶନିକମାନେ ଏକ ପରମ, ଅବିନାଶୀ, ଚିରନ୍ତନ ଏବଂ ଆଧ୍ୟାତ୍ମିକ ମୂଲ୍ୟବୋଧକ ନୀତିଶାସ୍ତ୍ରର ସାରତତ୍ତ୍ୱ ବୋଲି ଅଭିହିତ କରିଆସିଛନ୍ତି । ଖ୍ରୀଷ୍ଟିୟାନ ତଥା ବିଶ୍ୱର ଅନ୍ୟାନ୍ୟ ଧର୍ମଶାସ୍ତ୍ରମାନେ ମଧ୍ୟ ଏପରି ଏକ ପରମମୂଲ୍ୟବୋଧ ସ୍ୱୟଂ ପରମେଶ୍ୱରଙ୍କର ଇଚ୍ଛାଶକ୍ତିର ତଥା ସ୍ୱରୂପରୁ ପ୍ରକାଶିତ ବୋଲି ପ୍ରଚାର କରିଯାଇଛନ୍ତି । କିନ୍ତୁ ଅଧ୍ୟାପକ ଡିଉଇ ଏତାଦୃଶ ନୈତିକ ମୂଲ୍ୟବୋଧ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି । ତାଙ୍କ ମତରେ ନୈତିକ ମୂଲ୍ୟବୋଧ କଦାପି ପରମ, ନିରପେକ୍ଷ, ଚିରନ୍ତନ ତଥା ଅବିନାଶୀ ନ ହୋଇ, ଏହା ସର୍ବଦା ଆପେକ୍ଷିକ, ପରତ, ସାମାଜିକ, ଉତ୍ପାଦକ, ଜୈବିକ ଏବଂ ସର୍ବୋପରି ନଶ୍ୱର କ୍ଷଣସ୍ଥାୟୀ ଅଟେ । ଆଧୁନିକ

(1) History of Phil by B. Russel—Page-781

ନୀତିବାଦୀମାନଙ୍କ ମତରେ ଯାହା ବର୍ତ୍ତମାନ ଏବଂ ଭବିଷ୍ୟତ ପାଇଁ ଅଭୀଷ୍ଟ ଏବଂ ଆବଶ୍ୟକ ତାହାହିଁ ବ୍ୟକ୍ତି ସମ୍ମୁଖରେ ମୂଲ୍ୟବାନ । ଏମନ୍ତ ଏକ ମତବାଦକୁ ମଧ୍ୟ ଡିଉଇ ପସନ୍ଦ କରିନାହାନ୍ତି । କାରଣ ଯାହା ଅଭୀଷ୍ଟ ବା ଅଭିଳଷିତ, ତାହା ବାଞ୍ଛିତ ନୁହେଁ କିମ୍ବା ଅଭିପ୍ରେତ ନୁହେଁ । (Which is desired is not desirable.)

ଡିଉଇଙ୍କ ପ୍ରୟୋଗବାଦୀ ନୀତିଶାସ୍ତ୍ର କହେ, ଯାହା ସମସ୍ତଙ୍କ ପାଇଁ ଅଭିପ୍ରେତ ବା ବାଞ୍ଛନୀୟ, ସନ୍ତୋଷଜନକ ଏବଂ ସର୍ବଗ୍ରାହ୍ୟ, ତାହାହିଁ ସମସ୍ତଙ୍କ ପକ୍ଷରେ ଶୁଭଙ୍କର, ମଙ୍ଗଳମୟ ଓ ସତ୍ୟ ଅଟେ । ଉଇଲିୟାମ କେଲିର ରାଇଟ୍ଙ୍କ ମତରେ (1) "Instrumental ethics, on the contrary, insists that only what would prove satisfactory in the life of all foreseable consequences to all persons affected can be regarded as satisfactory good and right."

ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ଡିଉଇ ଉପଯୋଗିତାବାଦୀମାନଙ୍କର କାର୍ଯ୍ୟର ପରିଣାମକୁ ମୂଲ୍ୟବୋଧର ମାନରୂପେ ମାନିନେଇଥିଲେ ମଧ୍ୟ ସେମାନଙ୍କର ସୁଖାନୁଭୂତିକୁ ନୀତିଶାସ୍ତ୍ରର ତଦାତ୍ମ୍ୟ ମାନ ରୂପେ ଗ୍ରହଣ କରିନେବାକୁ ପ୍ରସ୍ତୁତ ନୁହନ୍ତି । ତାଙ୍କ ମତରେ ମନୁଷ୍ୟର ଚରିତ୍ର, ମନୁଷ୍ୟର ପରମ ଲକ୍ଷ୍ୟ ଓ ବ୍ୟଷ୍ଟିଗତ ଅହଂ ବା ଆତ୍ମା ତାହାର ବିମର୍ଷୀ ଅନୁଭୂତି ଦ୍ୱାରା ପରିବର୍ତ୍ତିତ, ପରିମାର୍ଜିତ ଏବଂ ରୂପାନ୍ତରିତ ହୋଇ ନିରବଚ୍ଛିନ୍ନ ଧାରାରେ ଗତି କରୁଛି । ତେଣୁ ଉପରୋକ୍ତ ନିରପେକ୍ଷ, କେବଳ, ଅବିନଶ୍ୱର, ଚିରନ୍ତନ ତଥା ପରମ ମୂଲ୍ୟବୋଧକୁ ଡିଉଇ ସ୍ୱୀକାର କରିନାହାନ୍ତି ।

ଡିଉଇ କହନ୍ତି ବ୍ୟକ୍ତିର ନିମିତ୍ତ ଏବଂ ଲକ୍ଷ୍ୟ, ଉଦ୍ଦେଶ୍ୟ ଏବଂ ଅଭିଳାଷ, ଚରିତ୍ର ଏବଂ ପରିଣାମ ସର୍ବଦା ଏକ ନୈତିକ ପରିବେଶକୁ ଲକ୍ଷ୍ୟ ହୋଇଥାଏ ଏବଂ ଏଗୁଡ଼ିକ ପରସ୍ପର ଅଙ୍ଗାଙ୍ଗୀ ଭାବେ ସଂଶ୍ଳିଷ୍ଟ ଅଟନ୍ତି । ନୈତିକ ମୂଲ୍ୟବୋଧ ଅଥବା ଆଦର୍ଶ ସବୁବେଳେ ଅଗ୍ରଗାମୀ ଏବଂ ପରିବର୍ତ୍ତନଶୀଳ । ଏହା କୌଣସି ଏକ ଯୁଗ ବା କାଳର ଗଣ୍ଡି ମଧ୍ୟରେ ସୀମାବଦ୍ଧ ହୋଇ ରହେ ନାହିଁ—ନୈତିକ ମୂଲ୍ୟବୋଧ ଏକ ଚଳମାନ ପ୍ରତ୍ୟୟ ; ତେଣୁ ଏପରି ଏକ ନୈତିକ ଆଦର୍ଶବୋଧ ତଥା ମୂଲ୍ୟବୋଧର ସଙ୍କା ନିରୂପଣ କରିବା କସ୍ମିନ କାଳେ ସମ୍ଭବ ନୁହେଁ । କିନ୍ତୁ ଥୋମାସ ଗ୍ରୀନ କହନ୍ତି ଯେ ଏପରି ଏକ ନୈତିକ ମୂଲ୍ୟବୋଧ ତଥା ଆଦର୍ଶବୋଧ ସ୍ୱୟଂ ପରମ ସତ୍ତ୍ୱଙ୍କର ଇଚ୍ଛା ମାତ୍ର । ପରନ୍ତୁ ଡିଉଇଙ୍କର ଉପରୋକ୍ତ ମତାମତରୁ ସ୍ପଷ୍ଟ ଅନୁମିତ ହୁଏ ଯେ, ସେ ଥୋମାସ ଗ୍ରୀନ ତଥା ଅନ୍ୟାନ୍ୟ ନବ୍ୟବାଦୀ

(1) History of Phil—by W. K. Wright—Page-547

ହେଗେଲପନ୍ଥୀମାନଙ୍କ ଆଦର୍ଶ ତଥା ନୀତିଶାସ୍ତ୍ର ଦ୍ୱାରା କେତେକ କ୍ଷେତ୍ରରେ ପ୍ରଭାବିତ ହୋଇଥିଲେ ମଧ୍ୟ ଏଠାରେ ଅଧ୍ୟାପକ ଡିଉଇ ଥୋମାସ ଗ୍ରୀନଙ୍କ ମତକୁ ଗ୍ରହଣ କରିନେବାକୁ ଆଦୌ ପ୍ରସ୍ତୁତ ନୁହନ୍ତି । ତାଙ୍କ ମତରେ ଏପରି ଏକ ପରମସତ୍ତାର ପରିକଳ୍ପନା ସମ୍ପୂର୍ଣ୍ଣ ବୃଥା ତଥା ଅବାସ୍ତବ ଅଟେ । ଏପରି କରିବା ଦ୍ୱାରା ଅତୀତକୁ ଜାବୁଡ଼ି ଧରିବା ହିଁ ସାର ହେବ ଏବଂ ସମାଜର ପ୍ରଗତିରେ ଅଶେଷ ବାଧାବିଘ୍ନ ସୃଷ୍ଟି ହେବ ; ତେଣୁ ଡିଉଇଙ୍କ ଚଳମାନ ନୈତିକ ମୂଲ୍ୟବୋଧକୁ ଏକ ସହଜ ଉପାୟରେ ବୁଝାଇଦେବାକୁ ଏଠାରେ ଏତିକି କହିଲେ ଯଥେଷ୍ଟ ହେବ ଯେ, ଏକ ଅଶ୍ୱାରୋହୀ ଯୁବକ ଦଳକୁ ଆମେ ଯଦି ପ୍ରଶ୍ନ କରୁ ଯେ "ତୁମେମାନେ କେଉଁଠାକୁ ଯାଉଛ ?"—ସେମାନେ ଡିଉଇଙ୍କ ନୀତିଶାସ୍ତ୍ରର ଆଦର୍ଶ ତଥା ମୂଲ୍ୟବୋଧକୁ ମାନିନେଇ ଯଦି କହନ୍ତି ଯେ "ଆମେ କେଉଁଠାକୁ ଯାଉଛୁ ଜାଣୁନା କିନ୍ତୁ ଆମେ ଚାଲିଛୁ ।" (1) "We don't konw where we are going, but we are on the way."

ପରିଶେଷରେ ସାମାଜିକ ମୂଲ୍ୟବୋଧକୁ ଡିଉଇ ନୀତିଶାସ୍ତ୍ରର ଆଦର୍ଶ ଓ ମୂଲ୍ୟବୋଧ ରୂପେ ସ୍ୱୀକାର କରିନେଇଛନ୍ତି, ଯାହାକି ସ୍ଥାଣୁ ନ ହୋଇ ସର୍ବଦା ବିକାଶ ଏବଂ ପ୍ରଗତି ପଥରେ ଅଗ୍ରସର ହେଉଛି । ବାସ୍ତବିକ ଡିଉଇ ଜଣେ ଖାଣ୍ଟି ସମାଜବାଦୀ । ତାଙ୍କର ସାମନ୍ତବାଦୀ ତଥା ଧନସ୍ୱାମୀ ଗୋଷ୍ଠୀମାନଙ୍କ ପ୍ରତି ଆଦୌ ସହାନୁଭୂତି ନ ଥିଲା । ସେ କହନ୍ତି ମନୁଷ୍ୟ ସବୁବେଳେ ଏକ ଅନିଶ୍ଚିତ, ବିପଦସଙ୍କୁଳ ଏବଂ ଦସ୍ୟୁମୟ ତଥା କାତରତାପୂର୍ଣ୍ଣ ପରିସ୍ଥିତିର ସମ୍ମୁଖୀନ ହୋଇ ଆସୁଛି । ଏପରି ଏକ ପରିସ୍ଥିତିରୁ ମନୁଷ୍ୟର ନୈତିକ ମୂଲ୍ୟବୋଧ ତଥା ଆଦର୍ଶର ଉତ୍ପତ୍ତି । ତେଣୁ ହବସ୍ କହିଛନ୍ତି— "The fear of violent death, the objective of preconiousness is the ultimate source of all reflections and knowledge' ମନୁଷ୍ୟ ତାର ଜୀବନକାଳରେ ଏତାଦୃଶ ପରିସ୍ଥିତିଗୁଡ଼ିକୁ ଆପୃଷ୍ଠ କରି, ତହିଁରୁ ନୈତିକ ମୂଲ୍ୟବୋଧ ସୃଷ୍ଟି କରିବାକୁ ଅଧ୍ୟାପକ ଡିଉଇ ଉପଦେଶ ଦେଇଛନ୍ତି । ତେଣୁ ନୈତିକ ମୂଲ୍ୟବୋଧର ସ୍ୱରୂପ କଦାପି ଚିରନ୍ତନ ହୋଇ ନ ପାରେ ଏବଂ ସମସ୍ୟାନୁକ୍ରମେ ତଥା ପରିସ୍ଥିତି ଦୃଷ୍ଟେ ଏହା ପରିବର୍ତ୍ତିତ ହୋଇ ଚାଲିଥାଏ ।

ମନୁଷ୍ୟ ପରିସ୍ଥିତିର ସମ୍ମୁଖୀନ ହୋଇ ଶତ ଉତ୍ଥାନ ପତନ, ସଂଘାତ ସଂଘର୍ଷ, ବେଦନା ଓ ଯନ୍ତ୍ରଣା ମଧ୍ୟରେ ଯେଉଁ ନୈତିକ ମୂଲ୍ୟବୋଧର ଆବିଷ୍କାର କରେ, ତାହା ଅଧ୍ୟାପକ ଡିଉଇଙ୍କ ମତରେ ମନୁଷ୍ୟର ବୌଦ୍ଧିକ ପ୍ରଣାଳୀର ଉତ୍କର୍ଷ ଏବଂ ଶ୍ରେଷ୍ଠତା

(1) History of Phil—by W. K. Wright—Page-548

ଉପରେ ସମ୍ପୂର୍ଣ୍ଣ ଭାବେ ନିର୍ଭର କରେ । କିନ୍ତୁ ପ୍ରଜ୍ଞା କାଣ୍ଟଙ୍କ ମତରେ ନୈତିକ ମୂଲ୍ୟବୋଧର ଆବିଷ୍କାର କୌଣସି ପ୍ରଣାଳୀର ଶ୍ରେଷ୍ଠତା ବା ଉତ୍କର୍ଷ ଉପରେ ନିର୍ଭର କରି ନପାରେ । * (1) In Kant's words a method in this type of situation is a "formula of skill, to be used as needed and as such cannot be supreme." ପରିସ୍ଥିତିକୁ ଅନୁଧ୍ୟାନ ଏବଂ ଅନୁଶୀଳନ କରି ନିଜକୁ ସୁହାଇଲା ଭଳି ଏକ ନୈତିକ ମାନଦଣ୍ଡ ନିର୍ଦ୍ଧାରଣ କରି ଉପସ୍ଥିତ ପରିସ୍ଥିତିକୁ ସୁଧାରିବାକୁ ପଡ଼ିବ ବୋଲି ଡିଉଇ ଦୃଢ଼ମତ ପୋଷଣ କରିଛନ୍ତି । ଏପରି ଭାବେ ଆବିଷ୍କୃତ ନୈତିକ ମାନଦଣ୍ଡ (standazd) ଗୁଡ଼ିକରୁ କାର୍ଯ୍ୟର ଉତ୍ତମତା ଏବଂ ସତ୍ୟତା ଜାଣି ହେବ । ତେଣୁ ଅଧ୍ୟାପକ ଡିଉଇ କହନ୍ତି—"The goodman not only measures his acts by a standard but he is concerned to revise his standard." ତେଣୁ ପରିସ୍ଥିତିକୁ ନେଇ ନୈତିକତାର ମାନଦଣ୍ଡ ଭିନ୍ନ ପ୍ରକାର ହୋଇପାରେ । ଏହାକୁ ଅଧ୍ୟାପକ ଡିଉଇ 'ନୈତିକତାର ବିଷମତା' ବୋଲି ଅଭିହିତ କରିଛନ୍ତି । ଅଧ୍ୟାପକ ଡିଉଇ, ତାଙ୍କ ଦ୍ୱାରା ପ୍ରଣୀତ "୧୯୦୮ ନୀତି ଶାସ୍ତ୍ର" ପୁସ୍ତକରେ କହିଛନ୍ତି ଯେ—"Virtues are numberless. Every situation, not of a routine order, brings in some special shading, some unique adaptation of position......Any virtuous character exhibits, however, certain main traits."

ଅତଏବ ସବୁପ୍ରକାର ଗୁଣରେ କିଛି ନା କିଛି ବିଶେଷତ୍ୱ ରହିଛି । ଅଧ୍ୟାପକ ଡିଉଇଙ୍କ ମତରେ ପ୍ରଜ୍ଞା କିମ୍ବା ଆଧୁନିକ ଅର୍ଥରେ ବିବେକିତାହିଁ ସମସ୍ତ ପ୍ରକାର ଗୁଣର ମାତୃସ୍ଥାନୀୟା ଏବଂ ମନୁଷ୍ୟର ଇଚ୍ଛାଶକ୍ତିରୁ ନିଃସୃତ । ପ୍ରଜ୍ଞା ବା ବିବେକିତା ହିଁ ମନୁଷ୍ୟକୁ ଯେ କୌଣସି ଅନାହୂତ ଏବଂ ବିଷମ ପରିସ୍ଥିତିରୁ ତଥା ସମସ୍ୟାରୁ ଉଦ୍ଧାର କରିଥାଏ । * (1) "Wisdom or (in modern phrase) Conscientiousness is the nurse of all the virtues and so has its place, in a sense, at the commencement, as a manifestation of the will to undertake a problem in incommensurability."

ଡିଉଇ କହନ୍ତି ମନୁଷ୍ୟର ଏହି ପ୍ରଜ୍ଞା ଅଥବା ବିବେକିତାରୁ ମନୁଷ୍ୟର ସତତା, ଅଭ୍ୟାସ, ପ୍ରେମ, ନ୍ୟାୟପରତା, ଶୌର୍ଯ୍ୟ, ବୀର୍ଯ୍ୟ, ସାହସ ତଥା ସତ୍ୟନିଷ୍ଠତାର ଉଦ୍ରେକ ହୋଇଥାଏ । ଏହିସବୁ ଗୁଣଗୁଡ଼ିକୁ ସାମୂହିକ ଭାବରେ ମନୁଷ୍ୟ ଜୀବନ-ସଂଗ୍ରାମରେ [illegible]

ହେଉଥିବା ସମସ୍ତ ସମସ୍ୟାଗୁଡ଼ିକର ସମାଧାନ କରିବାକୁ ଚେଷ୍ଟାକରେ । ଅଧ୍ୟାପକ ଟଫ୍‌ଟସ୍ ଡିଉଇଙ୍କର ୧୯୦୮ ମସିହାଠାରୁ ୧୯୩୨ ମସିହା ପର୍ଯ୍ୟନ୍ତ ନୀତିଶାସ୍ତ୍ରକୁ ମୂଲ୍ୟାଙ୍କନ କରିଛନ୍ତି ତାଙ୍କର "ନୈତିକତାର ଆରମ୍ଭ ଏବଂ ବିକାଶ" ପୁସ୍ତକରେ । ଉକ୍ତ ପୁସ୍ତକରେ ଅଧ୍ୟାପକ ଟଫ୍‌ଟସ ବିଶ୍ୱବିଖ୍ୟାତ ଅର୍ଥନୀତିଜ୍ଞ ରିକାର୍ଡୋଙ୍କ ମତ ସହିତ ପଣ୍ଡିତ, ଡିଉଇଙ୍କ ନୈତିକ ମାନଦଣ୍ଡ ତଥା ମୂଲ୍ୟବୋଧକୁ ତୁଳନା କରି କହିଛନ୍ତି ଯେ—* (2) This is a famous remark of the economist Ricardo to the effect that "every transaction in commerce is an individual transaction." So also the very change in moral norms must have had its beginning in the decision of the individuals confronting situation of incommensurables in their experience."

---

## ପଞ୍ଚମ ପରିଚ୍ଛେଦ

# ଡିଉଇଙ୍କ ରାଜନୀତିକ ଦର୍ଶନ

### (କ)

ଅଧ୍ୟାପକ ଡିଉଇ ତାଙ୍କ ଜୀବନକାଳରେ ପ୍ରଧାନତଃ ସାମାଜିକ ଏବଂ ରାଜନୀତିକ ସମସ୍ୟାଗୁଡ଼ିକ ଉପରେ ବିଶେଷ ଗୁରୁତ୍ୱ ଆରୋପ କରିବା ସଙ୍ଗେ ସଙ୍ଗେ ସେସବୁ ସମସ୍ୟା ଉପରେ ଗଭୀର ଅଧ୍ୟୟନ ଏବଂ ପର୍ଯ୍ୟାଲୋଚନା କରିଯାଇଛନ୍ତି । ପୂର୍ବରୁ ଆମେ ବିଶେଷ ଭାବେ ଅବଗତ ଅଛୁଁ ଯେ ଅଧ୍ୟାପକ ଡିଉଇ ବିଶେଷତଃ ରାଜନୀତିକ ତଥା ସାମାଜିକ ସମସ୍ୟା ଗୁଡ଼ିକର ସମାଧାନ ପାଇଁ ଅର୍ଥାତ୍ ସର୍ବୋପରି ମନୁଷ୍ୟ ସମାଜର ପୁନର୍ଗଠନ ପାଇଁ ଦର୍ଶନକୁ ଏକ ଅବଲମ୍ବିତ ଉପାୟ ତଥା ସହାୟକ କିମ୍ବା ଏକ ଆୟୁଧ ତଥା ସାଧନ ରୂପେ ଗ୍ରହଣ କରି ନେଇଛନ୍ତି । ସେଥିଯୋଗୁଁ ଡିଉଇ ତାଙ୍କର ଦର୍ଶନଶାସ୍ତ୍ରକୁ ସାଧନବାଦ ତଥା ଆୟୁଧବାଦ ବୋଲି ନାମିତ କରି ଅଛନ୍ତି । ଅଧ୍ୟାପକ ଲେନ୍ ଡବ୍ଲ୍ୟୁ ଲାଙ୍କାଷ୍ଟରଙ୍କ ମତରେ * (1) He called his philosophy "Instrumentalism" because he thought of it as a tool for dealing with concrete prblems, in contrast to the traditional philosophies that concerned themselves with such abstractions as Being, Essence Truth and Reality—" ଠିକ୍ ବେକନ୍‌ଙ୍କ ପରି ଡିଉଇ 'ଜ୍ଞାନ'କୁ ଏକ 'ଶକ୍ତି' ରୂପେ ମାନି ନେଇଛନ୍ତି । ମନୁଷ୍ୟ ଯେ କୌଣସି ପରିସ୍ଥିତିକୁ ଆୟତ୍ତକରି ନିଜର ପୁରୁଷାର୍ଥରେ ନିୟୋଗ କରିବା ପାଇଁ ଜ୍ଞାନର ଆବଶ୍ୟକ ବୋଲି ଡିଉଇ କହନ୍ତି । ତାଙ୍କ ମତିରେ ଏତାଦୃଶ ଜୀବନ ଦର୍ଶନର ଜ୍ଞାନ ଏବଂ ଉକ୍ତ ଦାର୍ଶନିକ ଜ୍ଞାନକୁ ଏକ ସହାୟକ ତଥା ସାଧନ ରୂପେ ବ୍ୟବହାର କରି ମନୁଷ୍ୟ ତାର ଯାବତୀୟ ସମସ୍ୟାବଳୀକୁ ସମାଧାନ କରିବାକୁ ଡିଉଇ ଉପଦେଶ ଦେଇଛନ୍ତି । ଜୀବନର ସମସ୍ତ ସମସ୍ୟାକୁ ପରିବର୍ତ୍ତିତ ପରିସ୍ଥିତି ଓ ଦୃଷ୍ଟିକୋଣରୁ ବିଚାର କରିବାକୁ ସେ ଏକ ନୂତନ ତର୍କାନୁମାର୍ଗ ସୃଷ୍ଟି କରିଛନ୍ତି ।

---

* (1) Political Philosophy-by—L. W. Lancaster — Page 333

ଜୀବନ-ସଂଗ୍ରାମରେ ସାଫଲ୍ୟ ଅର୍ଜ୍ଜନ କରିବା ପାଇଁ ଡିଉଇ ସାଧନବାଦର ପ୍ରୟୋଗ କରିଛନ୍ତି । ତେଣୁ ସେ ଗତାନୁଗତିକ ଦାର୍ଶନିକ ଚିନ୍ତାକୁ ନୂତନ ଦିଗ୍‌ଦର୍ଶନ ଦେବାକୁ ଉଦ୍ୟମ କରିଛନ୍ତି, ତାଙ୍କର ଏହି ସାଧନବାଦ ଦ୍ୱାରା । ତାଙ୍କ ମତରେ ପୁରାତନ ଦର୍ଶନ କେବଳ ଏକ ଗୋଷ୍ଠୀଗତ ଚିନ୍ତାଧାରାର ବହିଃ ପ୍ରକାଶ ମାତ୍ର । ଏହି ପୁରାତନ ଦାର୍ଶନିକ ଗୋଷ୍ଠୀ ସମାଜରେ ପ୍ରଚଳିତ କୁସଂସ୍କାର ଏବଂ ଅନ୍ଧବିଶ୍ୱାସ ଗୁଡ଼ିକ ବିରୁଦ୍ଧରେ କୌଣସି ସଂଗ୍ରାମ କରିବାକୁ ପସନ୍ଦ କରି ନାହାନ୍ତି । ବିଶେଷତଃ ରାଜନୀତି କ୍ଷେତ୍ରରେ ଡିଉଇ ଉକ୍ତ ଗୋଷ୍ଠୀଗତ ଚିନ୍ତାଧାରାକୁ ପରିତ୍ୟାଗ କରିବାକୁ ଉପଦେଶ ଦେଇଛନ୍ତି । ଅତୀତର ଦାର୍ଶନିକ-ମାନଙ୍କର ପୁଷ୍କଳମନୀଷା ତଥାକଥିତ ପ୍ରଜ୍ଞାନ ଏବଂ ପାଣ୍ଡିତ୍ୟ ମନୁଷ୍ୟର ବାସ୍ତବ ପରିସ୍ଥିତିକୁ ସମାଧାନ କରିବାକୁ ଅଦ୍ୟାବଧି ସକ୍ଷମ ହୋଇ ପାରିନି । ଅଧ୍ୟାପକ ଡିଉଇଙ୍କ ମତରେ ଅନ୍ୟାନ୍ୟ ଅନୁଷ୍ଠାନମାନଙ୍କ ପରି ଗୋଟିଏ ରାଷ୍ଟ୍ର (state) ମଧ୍ୟ ଏକ ଅନୁଷ୍ଠାନ । ତେଣୁ ସେ କହନ୍ତି ରାଷ୍ଟ୍ରଟିକୁ ମଧ୍ୟ ଏକ ବାସ୍ତବ ଦୃଷ୍ଟିକୋଣରୁ ବିଚାର କରିବାକୁ ପଡ଼ିବ ।

ଗୋଟିଏ ରାଷ୍ଟ୍ରର ଉଦ୍ଦେଶ୍ୟ, ଲକ୍ଷ୍ୟ ଏବଂ ସ୍ୱରୂପ କଣ ହେବ ତାହା ରାଜନୀତିକ ଦର୍ଶନ ସ୍ଥିର କରିଦେବା ଉଚିତ । ସରକାର କହିଲେ କେବଳ ରାଷ୍ଟ୍ର ଏବଂ ତାର କର୍ମଚାରୀ-ମାନଙ୍କୁ ବୁଝାଏ ନାହିଁ । ରାଜ୍ୟ ତଥା ରାଷ୍ଟ୍ରର ପ୍ରଶାସନିକ ବ୍ୟବସ୍ଥାମାନ ବୁଝିବା ପାଇଁ କର୍ମଚାରୀମାନଙ୍କର ଆବଶ୍ୟକ, କିନ୍ତୁ ଉକ୍ତ କର୍ମଚାରୀବର୍ଗ ଯେ କେବଳ ମାତ୍ର 'ସରକାର' ଏପରି ବୁଝିବା ଅତି ଭ୍ରମାତ୍ମକ ଏବଂ ମାରାତ୍ମକ ଅଟେ । ରାଷ୍ଟ୍ରର ଜନସାଧାରଣ, କର୍ମଚାରୀ ଗୋଷ୍ଠୀ, ରାଷ୍ଟ୍ରକର୍ତ୍ତା ତଥା ତାଙ୍କର ପରାମର୍ଶଦାତା ମଣ୍ଡଳୀ ଇତ୍ୟାଦିଙ୍କୁ ନେଇ ରାଷ୍ଟ୍ରଟିର ଜନ୍ମ । ଏମାନେ ସମସ୍ତେ ରାଷ୍ଟ୍ରର ମଙ୍ଗଳ ଏବଂ ଜନସାଧାରଣଙ୍କ ହିତାର୍ଥେ ନିଯୁକ୍ତ ବୋଲି ମନେ କରିବା ଶ୍ରେୟସ୍କର । ରାଷ୍ଟ୍ରର ସୁନାମ ରାଷ୍ଟ୍ରର କର୍ମଚାରୀବର୍ଗ, ଅମଲାତନ୍ତ୍ର ତଥା ସର୍ବୋପରି ରାଷ୍ଟ୍ରନାୟକଙ୍କର କର୍ମକୁଶଳତା ଏବଂ ଅଭିଯୋଗ୍ୟତା ଉପରେ ସମ୍ପୂର୍ଣ୍ଣ ଭାବେ ନିର୍ଭରଶୀଳ ଅଟେ । ତେଣୁ ଡିଉଇ କହନ୍ତି—* (1) "The state is the organisation effected through officials for the protection of the interest shared by its members." ଅବଶେଷରେ ଡିଉଇ ମତ ଦେଇଛନ୍ତି ଯେ ରାଷ୍ଟ୍ରର ସ୍ୱରୂପ ଏବଂ ଲକ୍ଷ୍ୟ ଏକ କ୍ରମାଗତ ଓ ଅବାରିତ ପରୀକ୍ଷଣ ପଦ୍ଧତି ଦେଇ ଗତି କରୁଥାଏ । ତେଣୁ ଏହା'ର ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ସବୁଦିନ ପାଇଁ ନିରୂପିତ କରାଯାଇ ନପାରେ । ପରିବର୍ତ୍ତିତ ପରିସ୍ଥିତିକୁ ସମ୍ମୁଖରେ ରଖି ରାଷ୍ଟ୍ରର ସ୍ୱରୂପ ଏବଂ ଲକ୍ଷ୍ୟ ପରିବର୍ତ୍ତନଶୀଳ ଅଟେ । ତେଣୁ ସେ କହନ୍ତି, "ଗଣତାନ୍ତ୍ରିକ ରାଷ୍ଟ୍ର ଏକ କ୍ରମାଗତ ତଥା ଅନାବୃତ ଏବଂ ଅବିରତ ପରୀକ୍ଷଣ ପଦ୍ଧତି ଉପରେ ସମ୍ପୂର୍ଣ୍ଣ ନିର୍ଭର କରେ ।

---

* (1) Masters of Political thought—by L. W. Lancaster—Page—342

# "ବ୍ୟଷ୍ଟିତ୍ୱ ଓ ବ୍ୟଷ୍ଟିବାଦ"

## (ଖ)

ବ୍ୟଷ୍ଟିତ୍ୱର ଅଭିବୃଦ୍ଧି ଓ ବିକାଶ ପାଇଁ ଡିଉଇ ବ୍ୟଷ୍ଟି (ବ୍ୟକ୍ତି) ତଥା ରାଷ୍ଟ୍ରର ସତ୍ତାର ଉପରେ ଗୁରୁତ୍ୱ ଆରୋପ କରିଛନ୍ତି । ତେଣୁ ବ୍ୟଷ୍ଟିତ୍ୱ କହିଲେ ବ୍ୟକ୍ତିର ସବୁପ୍ରକାର ଆର୍ଥିକ ଏବଂ ଆତ୍ମିକଶକ୍ତିର ସମୂହ ବିକାଶକୁ ବୁଝାଏ । ଅତୀତର ଗତାନୁଗତିକ ବ୍ୟଷ୍ଟିତ୍ୱ ସମ୍ବନ୍ଧୀୟ ଧାରଣାକୁ ଅଧ୍ୟାପକ ଡିଉଇ ପରିତ୍ୟାଗ କରିଛନ୍ତି । L. W. Lancasterଙ୍କ ମତରେ *(1) By individuality he (Dewey) meant what Mill had in mind in his eloquent plea for the complete harmoneous development of man's capacities." ଡିଉଇ କହନ୍ତି ପୁରାତନ ଏବଂ ଅତୀତ ଦିନର ବ୍ୟଷ୍ଟିତ୍ୱ ସାମନ୍ତବାଦୀ ମନୋବୃତ୍ତି ଉପରେ ସମ୍ପୂର୍ଣ୍ଣ ଭାବେ ନିର୍ଭର କରୁଥିବା ସଙ୍ଗେ ସଙ୍ଗେ ଏହା ପ୍ରଧାନତଃ ଅର୍ଥନୀତିକ ସ୍ୱଚ୍ଛଳତା ଉପରେ ନିର୍ଭରଶୀଳ ଥିଲା । କିନ୍ତୁ ଉକ୍ତ ପୁରାତନ ଧାରା ସାମନ୍ତବାଦୀ ମନୋବୃତ୍ତିର ମୂଳୋତ୍ପାଟନ ପାଇଁ ଡିଉଇ ସତତଃ ଚେଷ୍ଟାକରି ଆସିଛନ୍ତି । ତାହା ନହେଲେ ବ୍ୟଷ୍ଟିତ୍ୱର ବିକାଶ ଏବଂ ପ୍ରତିଷ୍ଠା ସମ୍ଭବ ହୋଇପାରିବ ନାହିଁ ବୋଲି ଡିଉଇ ଆଶଙ୍କା ପ୍ରକାଶ କରିଛନ୍ତି । ଏତଦ୍ଭିନ୍ନ ଡିଉଇଙ୍କ ମତରେ କେବଳ ଅର୍ଥନୀତିକ ଦୃଷ୍ଟିକୋଣରୁ ବ୍ୟଷ୍ଟିକୁ ବିଚାର ନକରି ବ୍ୟଷ୍ଟିର ସମସ୍ତ ଅନ୍ତର୍ନିହିତ ଶକ୍ତିର ବିକାଶ ସାଧନ ରାଷ୍ଟ୍ର ମାଧ୍ୟମରେ କରିବାକୁ ପଡ଼ିବ । ତଥାକଥିତ ସମାଜବାଦ ଓ ସମଷ୍ଟିବାଦ ମଧ୍ୟ ବ୍ୟଷ୍ଟିବାଦର ଉନ୍ନତି ସାଧନ କରି ନପାରେ । ବ୍ୟଷ୍ଟିତ୍ୱର ବିକାଶ ସର୍ବଦା ସାମୂହିକ, ସମବାୟ ଓ ଯୌଥିକ ଭିତ୍ତିରେ କରିବାକୁ ପଡ଼ିବ । ଅତୀତର ସାର୍ବିକ ତାର୍କିକ ଧାରଣାକୁ ମଧ୍ୟ ପରିତ୍ୟାଗ କରି ଏକ ବ୍ୟଷ୍ଟିକେନ୍ଦ୍ରିକ ତର୍କ ମୀମାଂସା ଉପରେ ତାହାକୁ ଆଧାରିତ କରିବାକୁ ପଡ଼ିବ । ଉକ୍ତ ବ୍ୟଷ୍ଟିକେନ୍ଦ୍ରିକ ତର୍କ ମୀମାଂସା ଦ୍ୱାରା ଉପସ୍ଥିତ ପରିସ୍ଥିତିକୁ ବିଶ୍ଳେଷଣ କରି ବ୍ୟଷ୍ଟି ତଥା ଗୋଷ୍ଠୀର କଲ୍ୟାଣରେ ପରିସ୍ଥିତିକୁ ଉପଯୋଗ କରିବାକୁ ପଡ଼ିବ । ଭୌତିକ ଉନ୍ନତି ପାଇଁ ଆର୍ଥନୀତିକ ବିକାଶ ସାମୂହିକ ଭାବେ ହେବା ଉଚିତ୍ । ଫଳରେ ଉନ୍ନତତର ଜୀବନର ସମ୍ଭବ ହେବା ସଙ୍ଗେ ସଙ୍ଗେ ଭୌତିକ ଜୀବନର ସୁରକ୍ଷା ହେବ ଏବଂ ନିରାପତ୍ତା ରହିପାରିବ ।

* (1) Ibd—Page—34 ।

# "ବ୍ୟଷ୍ଟି ଏବଂ ସମାଜ"

## (ଗ)

ବ୍ୟକ୍ତି ଏବଂ ସମାଜ ଉପରେ ଆଲୋଚନା କରିବାକୁ ଗଲେ ରାଷ୍ଟ୍ର ଏବଂ ସମାଜ, ବ୍ୟକ୍ତି ଏବଂ ରାଷ୍ଟ୍ର, ବ୍ୟକ୍ତିବାଦ ତଥା ରାଷ୍ଟ୍ରବାଦ ଏବଂ ସର୍ବୋପରି ରାଜତନ୍ତ୍ର ଏବଂ ଗଣତନ୍ତ୍ର ଇତ୍ୟାଦି ଜଟିଳ ପ୍ରଶ୍ନଗୁଡ଼ିକର ସ୍ୱତଃ ଉତ୍ଥାପନ ହୋଇଥାଏ ।

କିନ୍ତୁ ବ୍ୟକ୍ତି ଏବଂ ଗୋଷ୍ଠୀଗତ ସମ୍ପର୍କୀୟ ସମସ୍ୟାଗୁଡ଼ିକର ସମାଧାନ ପାଇଁ ଯେଉଁସବୁ ପ୍ରଶ୍ନ ଉତ୍ଥାପନ ହୋଇଛି, ସେଗୁଡ଼ିକ ମଧ୍ୟରୁ କୌଣସିଟି ହେଲେ ଉକ୍ତ ସମସ୍ୟାଟିର ସମାଧାନ କରିବାକୁ ସକ୍ଷମ ହୋଇ ନାହାନ୍ତି । ଉଦାହରଣ ସ୍ୱରୂପ କେତେକ କହନ୍ତି ଯେ ବ୍ୟକ୍ତି ଏବଂ ଗୋଷ୍ଠୀ ପରସ୍ପର ସ୍ୱାଧୀନ ଏବଂ ଭିନ୍ନ ଅଟନ୍ତି । ଆଉ କେତେକ କହନ୍ତି ଯେ ବ୍ୟକ୍ତି ଏବଂ ଗୋଷ୍ଠୀ ଦୁଇଟିଯାକ ପରସ୍ପର ଅଙ୍ଗାଙ୍ଗୀ ଭାବେ ସମ୍ବନ୍ଧଶୀଳ ଏବଂ ପରିପୂରକ ତଥା ଗୋଟିକର ସ୍ୱାର୍ଥ ଅନ୍ୟଟି ଉପରେ ନିର୍ଭରଶୀଳ ଅଟନ୍ତି । ଏଥିରୁ ସ୍ପଷ୍ଟ ସୂଚିତ ହୁଏ ଯେ, ଏହିସବୁ ସଂପ୍ରଦାୟ ଗୁଡ଼ିକର ପ୍ରକୃତି ସର୍ବଦା Diulectic ଅର୍ଥାତ୍ ଦ୍ୱନ୍ଦ୍ୱାତ୍ମକ । ଯେଉଁମାନେ ଉପରୋକ୍ତ ମତାମତ ପୋଷଣ କରନ୍ତି, ସେମାନେ ସାମାନ୍ୟ ସଂପ୍ରଦାୟ ଗୁଡ଼ିକ ଦ୍ୱାରା ବିଶେଷ ସଂପ୍ରଦାୟ ଗୁଡ଼ିକର ସମାଧାନ କରିବାକୁ ଉଦ୍ୟମ କରିଛନ୍ତି ; କିନ୍ତୁ ଡଉଇ କହନ୍ତି ଯେତେବେଳେ ବ୍ୟଷ୍ଟି (ବିଶେଷ ସଂପ୍ରଦାୟ) ଗୋଷ୍ଠୀ (ସାମାନ୍ୟ ସଂପ୍ରଦାୟ)ରେ ସଂପୂର୍ଣ୍ଣ ଭାବେ ନିମଜ୍ଜିତ ହୋଇଯାଏ ସେତେବେଳେ ବ୍ୟଷ୍ଟି ବା ବିଶେଷ ସଂପ୍ରଦାୟ ନିଜର ସ୍ୱାଧୀନସତ୍ତା ତଥା ନିଜସ୍ୱ ହରାଇ ବସେ । ଅର୍ଥାତ୍ ଯେତେବେଳେ ବ୍ୟଷ୍ଟି ସମଷ୍ଟି ଅଥବା ଗୋଷ୍ଠୀ ସହିତ ଏକୀଭୂତ ହୋଇଯାଏ, ସେତେବେଳେ ସେ ସମାଜ ଅଥବା ଗୋଷ୍ଠୀର ଅଙ୍ଗୀଭୂତ ହୋଇଯାଏ । କିନ୍ତୁ ଡଉଇଙ୍କ ମତରେ ବ୍ୟଷ୍ଟି ବା ବ୍ୟକ୍ତି ସର୍ବଦା ସ୍ୱାଧୀନ ଏବଂ ସ୍ୱତନ୍ତ୍ର ଭାବରେ କାର୍ଯ୍ୟ କରିପାରନ୍ତି । ତଥାପି ସମଷ୍ଟି ଅର୍ଥାତ୍ ସମାଜ ବ୍ୟତୀରେକ ବ୍ୟଷ୍ଟି ପୂର୍ଣ୍ଣତଃ କିଛି କରିପାରିବା ସମ୍ଭବ ନୁହେଁ । ତେଣୁ ଡଉଇ କହନ୍ତି ବ୍ୟଷ୍ଟିର ସମସ୍ତ କାର୍ଯ୍ୟ ଗୋଷ୍ଠୀ ଓ ସମାଜର ସହାୟତା ଏବଂ ସହଯୋଗରେ ପରିପୂର୍ଣ୍ଣତା ଲାଭ କରିଥାଏ । ସେ କହନ୍ତି – ※ (1)"Singular things act, but they act together. Nothing has been discovered which acts in entire isolation. The action of every thing is along with the action of other things. The 'alongwith' is of such a kind

---

※ (1) Masters of Political Thought-by
L. W. Lancaster Page—346

that the behaviour of each is modified by its connection with others." ପ୍ରୋକ୍ତ ବକ୍ତବ୍ୟରୁ ସ୍ପଷ୍ଟ ଅନୁମିତ ହୁଏ ଯେ ବ୍ୟଷ୍ଟି ସର୍ବଦା ଗୋଷ୍ଠୀ 'ସହିତ' କାର୍ଯ୍ୟକରେ । ଉକ୍ତ 'ସହିତ' ସମ୍ବନ୍ଧଟିକୁ ଦାର୍ଶନିକ ଡିଉଇ 'ଅନ୍ୟୋନ୍ୟକ୍ରିୟା' ବୋଲି ଅଭିହିତ କରିଛନ୍ତି । ଅର୍ଥାତ୍ ବ୍ୟଷ୍ଟି ଓ ସମଷ୍ଟି ମଧ୍ୟରେ ସର୍ବଦା ଏକ ସୁସମ୍ପର୍କ ଅବିଚ୍ଛିନ୍ନ ଭାବେ ବିଦ୍ୟମାନ ରହିଛି । ଉକ୍ତ ସମ୍ବନ୍ଧ ତଥା କ୍ରିୟା ବଳରେ ବ୍ୟଷ୍ଟି ଏବଂ ସମଷ୍ଟି ତଥା ସମାଜ ସର୍ବଦା କାର୍ଯ୍ୟକାରୀ ହୋଇଥାନ୍ତି ; କିନ୍ତୁ ଏଠାରେ ପୁଣି ଏକ ପ୍ରଶ୍ନ ଉଠେ ଯେ ଉକ୍ତ 'ଅନ୍ୟୋନ୍ୟକ୍ରିୟା' ବ୍ୟକ୍ତି ଏବଂ ସମଷ୍ଟି ମଧ୍ୟରେ ଅବିଚ୍ଛିନ୍ନ ଭାବେ ବିଦ୍ୟମାନ ଥିଲେହେଁ, ଏହା ସର୍ବଦା 'ରାଷ୍ଟ୍ର' ଦ୍ୱାରା ପରିଚାଳିତ ଏବଂ ସଂଯମିତ ହୋଇଥାଏ । ତାହା ନ ହୋଇଥିଲେ ବ୍ୟଷ୍ଟି ସମଷ୍ଟି 'ସହିତ' କାର୍ଯ୍ୟ କରିପାରନ୍ତା ନାହିଁ । ଅଧ୍ୟାପକ ଡିଉଇଙ୍କ ମତରେ ବ୍ୟଷ୍ଟି ଏବଂ ସମାଜ ତଥା ସମଷ୍ଟି ମଧ୍ୟରେ କଦାପି ଅସହଯୋଗ କିମ୍ବା ଦ୍ୱନ୍ଦ୍ୱ ରହି ନପାରେ ; କିନ୍ତୁ ଏହା ଅତି କରୁଣ ସତ୍ୟ ଯେ, ସମୟ ସମୟେ ସମାଜର କେତେକ ବ୍ୟବସ୍ଥାକୁ କେନ୍ଦ୍ରକରି ବ୍ୟକ୍ତି ଏବଂ ସମାଜ ତଥା ସମଷ୍ଟି ମଧ୍ୟରେ ଦ୍ୱନ୍ଦ୍ୱ ଏବଂ ଅସହଯୋଗ ଅନିବାର୍ଯ୍ୟ ହୋଇପଡ଼େ । ସମାଜ ବ୍ୟକ୍ତିର ସମସ୍ତ ସୁଖ, ସମୃଦ୍ଧି ତଥା ପ୍ରଗତିର ଏକମାତ୍ର ପନ୍ଥା ନ ହେଲେ ମଧ୍ୟ, ବ୍ୟକ୍ତିର ସର୍ବାଙ୍ଗ ବିକାଶ ପାଇଁ ସମାଜ ବହୁ କ୍ଷେତ୍ରରେ ଦାୟୀ । ତଥାପି, ଡିଉଇ କହନ୍ତି, ସମାଜ ଉପରେ ବ୍ୟକ୍ତିର ବ୍ୟକ୍ତିତ୍ୱ ସମ୍ପୂର୍ଣ୍ଣ ନିର୍ଭରଶୀଳ ନୁହେଁ । ତେଣୁ ପୂର୍ବ ଧାରଣାର ବଶବର୍ତ୍ତୀ ହୋଇ ଆମେ ଯୁକ୍ତି କରିପାରୁ ଯେ ବ୍ୟଷ୍ଟି ବା ବ୍ୟକ୍ତି (କ) କିଛି ନୁହେଁ, ସମାଜହିଁ (ଖ) ବ୍ୟକ୍ତିର ସର୍ବାଙ୍ଗ ବିକାଶ ପାଇଁ ସବୁକିଛି । ଅଥବା ଅନ୍ୟ ଭାଷାରେ ଆମେ କହିପାରୁ ଯେ ବ୍ୟକ୍ତିର ଦୈହିକ ଗୁଣଗୁଡ଼ିକ ବ୍ୟକ୍ତିର ବ୍ୟକ୍ତିତ୍ୱ ଗଠନରେ ମୁଖ୍ୟ ସହାୟକ ନୁହେଁ, ଏଥିରେ ସମାଜର ମୁଖ୍ୟ ଭୂମିକା ରହିଛି ; କିନ୍ତୁ ଅଧ୍ୟାପକ ଡିଉଇଙ୍କ ମତରେ, 'ବ୍ୟକ୍ତି ଏବଂ ବ୍ୟକ୍ତିର' ସମ୍ପର୍କକୁ ନେଇ ସମାଜ ଗଠିତ । ତେଣୁ ବ୍ୟକ୍ତିର କାର୍ଯ୍ୟ ଏବଂ ତାର ଅନ୍ୟ ସହିତ ସମ୍ପର୍କକୁ ବାଦ ଦେଲେ ସମାଜର ଅସ୍ତିତ୍ୱ ସମ୍ଭବ ହୋଇ ପାରିବ ନାହିଁ । ଅତଏବ ବ୍ୟକ୍ତିର ଅନ୍ୟ ବ୍ୟକ୍ତିମାନଙ୍କ ସମ୍ପର୍କରୁ 'ସମାଜର' ସୃଷ୍ଟି ହିଁ ସମ୍ଭବ ।

## ରାଷ୍ଟ୍ର ଏବଂ ଗଣତନ୍ତ୍ର
### (ଘ)

ଅଧ୍ୟାପକ ଡିଉଇଙ୍କ ମତରେ—* "The state is the organisation of public effected through officials for the protection of the interest shared by its members." ଡିଉଇ କହନ୍ତି ରାଷ୍ଟ୍ରର

* "The Public and its Problems"—by J. Dewey—Page 7

ଅନ୍ତିତ୍ୱ ବ୍ୟକ୍ତି ସକଳର ଐତିହାସିକ ପରିଧାର ଓ ତତ୍ତ୍ୱ ମଧ୍ୟରେ ନଥାଏ । ସମାଜ ତଥା ଗୋଷ୍ଠୀର ଘଟଣାବଳୀକୁ ନେଇ ଏବଂ ସେଗୁଡ଼ିକର ପରିଣାମକୁ ଅନ୍ତର୍ଭୁକ୍ତ କରି ରାଷ୍ଟ୍ରର ଜନ୍ମ । ତେଣୁ ରାଷ୍ଟ୍ର ପ୍ରଧାନତଃ କ୍ରିୟାଭିତ୍ତିକ । ଜନସାଧାରଣ ତଥା ଗୋଷ୍ଠୀର ଏକ ସନ୍ନିବିଷ୍ଟ ସଙ୍ଗଠନକୁ ରାଷ୍ଟ୍ର କହନ୍ତି । ଏଥିରେ ବ୍ୟକ୍ତିର ଯଥେଷ୍ଟ ସ୍ୱାଧୀନତା ରହିଥାଏ । ଏପରି ଏକ ରାଷ୍ଟ୍ରକୁ ଡିଉଇ ଗଣତାନ୍ତ୍ରିକ ରାଷ୍ଟ୍ର ରୂପେ ଅଭିହିତ କରିଛନ୍ତି । ଏପରି ଏକ ରାଷ୍ଟ୍ର ଗଠନରେ ପ୍ରତ୍ୟେକ ଜନଗଣ (ବ୍ୟକ୍ତି)ଙ୍କର ସହଯୋଗ, ସହାନୁଭୂତି ତଥା ସ୍ୱାଧୀନତା ରହିଥାଏ । ଉକ୍ତ ରାଷ୍ଟ୍ର ତାର ଅମଲାତନ୍ତ୍ର ତଥା କର୍ମଚାରୀବର୍ଗଙ୍କର ଅଭିଯୋଗ୍ୟତା ଏବଂ କର୍ମକୁଶଳତା ମାଧ୍ୟମରେ ବ୍ୟକ୍ତି ଏବଂ ଗୋଷ୍ଠୀର ସମୂହ କଲ୍ୟାଣ ସାଧନ କରିବା ସଙ୍ଗେ ସଙ୍ଗେ ରାଷ୍ଟ୍ରକୁ ପ୍ରଗତି ପଥରେ ଆଗେଇ ନେଇଥାଏ । ଏଥିପାଇଁ ବ୍ୟକ୍ତିକୁ ବହୁ ସମୟରେ ଆତ୍ମ ସଂଯମୀ ହେବାକୁ ପଡ଼ିଥାଏ । ଡିଉଇଙ୍କ ମତରେ ରାଷ୍ଟ୍ରର ଆଇନ୍ ଏବଂ ନୀତି ନିୟମ କେବେହେଲେ ଚିରନ୍ତନ ବା ଚିରସ୍ଥାୟୀ ନୁହେଁ, ଏହା ସମୟ ଏବଂ ସମାଜର ଆବଶ୍ୟକତାକୁ ନେଇ ପରିବର୍ତ୍ତିତ ହେଉଥାଏ । ଏହା ଫଳରେ ରାଷ୍ଟ୍ର ସର୍ବଦା ଏକ ପରିବର୍ତ୍ତିତ ରୂପରେଖ ଧାରଣ କରି ଅଗ୍ରସର ହେଉଥାଏ । ତେଣୁ ଡିଉଇ କହନ୍ତି—ଏହି ଦୃଷ୍ଟିରୁ ଏକ ସମୟରେ କୌଣସି ଏକ ସର୍ବୋତ୍ତମ ରାଷ୍ଟ୍ର ଥିଲା କିମ୍ବା ଅଛି ଅଥବା ରହିବ ବୋଲି କହିବା ଅତି ଅବାନ୍ତର ଏବଂ ଅପ୍ରାସଙ୍ଗିକ ହେବ । ଯେହେତୁ ରାଷ୍ଟ୍ର କୌଣସି ଏକ ଦୈବୀ ଶକ୍ତିର ରୂପରେଖ ନୁହଁ—ଏହା ମନୁଷ୍ୟକୃତ, ସେହି ହେତୁରୁ ରାଷ୍ଟ୍ରର ସମସ୍ୟାବଳୀ ସର୍ବଦା ଅନୁଧ୍ୟାନ ଏବଂ ପରୀକ୍ଷଣ ଯୋଗ୍ୟ । ବ୍ୟକ୍ତିର ପ୍ରତ୍ୟକ୍ଷ, ପରୋକ୍ଷ ଏବଂ ସୁଦୂର ପ୍ରସାରୀ ସାହାଯ୍ୟ, ସହଯୋଗ, ସହାନୁଭୂତି ଏବଂ ସମ୍ପର୍କ ବଳରେ ରାଷ୍ଟ୍ର ପ୍ରଗତି ଏବଂ ଉନ୍ନତ ପଥରେ ଅଗ୍ରସର ହୋଇପାରେ ; କିନ୍ତୁ କୌଣସି ଏକ ନିର୍ଦ୍ଦିଷ୍ଟ ଉନ୍ନତିକୁ ରାଷ୍ଟ୍ରର ଅଗ୍ରଗତିର ପରମ ଏବଂ ଚରମ ପରିଣତି ବୋଲି କହିବା ଧୃଷ୍ଟତା ମାତ୍ର । ଏସବୁ ସମସ୍ୟାର ନିରାକରଣ ପାଇଁ ଡିଉଇ ଏକ 'ରାଜନୀତି ଦର୍ଶନ' ଉପରେ ଅଶେଷ ଗୁରୁତ୍ୱ ଆରୋପ କରିଛନ୍ତି । ତାଙ୍କ ମତରେ 'ରାଜନୀତି ଦର୍ଶନ' ଏପରି ଏକ ପ୍ରଣାଳୀ ସୃଷ୍ଟି କରିପାରେ, ଯାହାଦ୍ୱାରା କି ରାଷ୍ଟ୍ରର ସମସ୍ତ ସମସ୍ୟାବଳୀର ଅନୁଧ୍ୟାନ ଏବଂ ପରୀକ୍ଷଣ କଦାପି ଅନ୍ଧାଧୁନ୍ଦିଆ ତଥା ଏକ୍ସିଡେଣ୍ଟାଲ ଭାବେ ପରିଚାଳିତ ହୋଇ ନ ପାରେ । * "The purpose of political philosophy is precisely the creation of method such that experimentation may go on less blindly, less at the mercy of accident, more intelligently, so that man may learn from their errors and profit by their success."

---

* "Social and Political Phil—by G. R. Geiger—
Philosophy of J. Dewey—Page-354

ବାସ୍ତବିକ ଡିଉଇଙ୍କ 'ରାଜନୀତିକ ଦର୍ଶନ' ଆମେରିକାନ ସଂସ୍କୃତିର ଏକ ଜ୍ୱଳନ୍ତ ନିଦର୍ଶନ । କାରଣ ଅଧ୍ୟାପକ ଡିଉଇ ରାଜନୀତିକ ଦର୍ଶନକୁ ପ୍ରକୃତ ଦର୍ଶନ ରୂପେ ଅଭିହିତ କରିଛନ୍ତି । ଅଧ୍ୟାପକ ଫେଡ଼େରିକ, ମାୟେର ଅଧ୍ୟାପକ ଡିଉଇଙ୍କର ରାଜନୀତିକ ଦର୍ଶନ ଉପରେ ମଧ୍ୟ ଅଶେଷ ଗୁରୁତ୍ୱ ଆରୋପ କରିଛନ୍ତି । ସେ କହନ୍ତି—* (1) "According to him (Dewey). philosophy must be concerned with social stafe of our time and must attempt to clarify the conflicting political and economic philosophies. In other words, traditional epistemology and metaphysical problems have a secondary place, and, instead, the major emphasis is to be upon Social Philosophy."

ଡିଉଇ ଏପରିକି ମାର୍କ୍ସିଜମ୍‌କୁ ମଧ୍ୟ କିଛି ସ୍ଥାନରେ ଗ୍ରହଣ କରି ନେଇଛନ୍ତି ଏବଂ ତାହାକୁ କାର୍ଯ୍ୟରେ ପରିଣତ କରିଛନ୍ତି । ବିଶେଷକରି ମାର୍କ୍ସଙ୍କର ଦ୍ୱନ୍ଦ୍ୱାତ୍ମକ ବସ୍ତୁବାଦର ଅର୍ଥନୈତିକ ଦିଗଟିକୁ ଡିଉଇ ଗ୍ରହଣ କରି ନେଇଛନ୍ତି । ତେଣୁ ଡିଉଇଙ୍କ ସହିତ ମାର୍କ୍ସଙ୍କର ମତଭେଦ ଖୁବ୍ କ୍ୱଚିତ ଦେଖିବାକୁ ମିଳେ । ଡିଉଇ କହନ୍ତି, ଏ ଜଗତ ତାର ନେତୃବର୍ଗଙ୍କ ପାଇଁ ଧ୍ୱସ୍ତ ବିଧ୍ୱସ୍ତ ହୋଇଛି । * (2) "The world has suffered more from leaders and authorities than from the masses."—

---

* (1) A History of Modern Phil—by F. Mayer, Page-550.

* (2) The Public and its Problems—by J. Dewey, Page-208

# ଷଷ୍ଠ ପରିଚ୍ଛେଦ

## ତିଉରିଙ୍କ ଦୃଷ୍ଟିରେ ଧର୍ମ

ଧର୍ମ କଥାଟି ଯେତିକି ସୂକ୍ଷ୍ମକର ଏବଂ ସାମ୍ପ୍ରଦାୟିକ ତତୋଧିକ ଭ୍ରମାତ୍ମକ ଏବଂ ମାରାତ୍ମକ । ଧର୍ମକୁ କେନ୍ଦ୍ରକରି ଅତୀତରୁ ଯେତେସବୁ ଅନିଶ୍ଚିତତା, ଗୋଳମାଳ, କନ୍ଦଳ ଏବଂ ସଂଘର୍ଷ ମନୁଷ୍ୟ ସମାଜର ଧର୍ମୀୟ ଜୀବନରେ ଦେଖା ଦେଇ ଆସିଛି, ସେପରି ମନୁଷ୍ୟ ଜୀବନର ଅନ୍ୟ କୌଣସି କ୍ଷେତ୍ରରେ ପରିଦୃଷ୍ଟ ହୁଏନା । ସେଥିପାଇଁ ସାବ୍ ଏଡ୍‌ୱାର୍ଡ୍ ତାଙ୍କ "ନିଓ ପ୍ଲେଟୋମାଇଜିମ୍ ଇନ୍ ରିଲିଜନ" ପୁସ୍ତକରେ ଯଥାର୍ଥ ଭାବେ କହିଛନ୍ତି ଯେ—

* When we take note of religious attempts to stake out her claims in the realm of human interest and values, the past centuries present a record of claims and counter claims, conflicts in views and theory have been unintermittant." ଅତୀତ ଏବଂ ସମସାମୟିକ କାଳର ଧର୍ମ କଥାଟିକୁ ଅନୁଧାନ କଲେ ଏତିକି ସ୍ପଷ୍ଟଭାବେ ପ୍ରତୀୟମାନ ହେବ ଯେ ଧର୍ମତତ୍ତ୍ୱଗୁଡ଼ିକ ପରସ୍ପର ବିରୁଦ୍ଧ ମତରେ ପରିପୂର୍ଣ୍ଣ । ଧର୍ମ ସର୍ବଦା ମନୁଷ୍ୟର ଜୀବନକୁ ବିବ୍ରତ ଏବଂ ଅସ୍ତବ୍ୟସ୍ତ କରିବା ସଙ୍ଗେ ସଙ୍ଗେ ମନୁଷ୍ୟକୁ ଅନିଶ୍ଚିତତା ତଥା ଏକ କୁହେଳିକା ମଧ୍ୟରେ ଆବଦ୍ଧ କରି ରଖି ଆସିଛି । ଫଳରେ ଧର୍ମଯୋଗୁଁ ହିଁ ମନୁଷ୍ୟ ସମାଜର ପ୍ରଗତି କେବଳ ଯେ ବହୁଭାବେ ବ୍ୟାହତ ହୋଇଛି ତାହା ନୁହେଁ, ଧର୍ମ ମନୁଷ୍ୟକୁ ବହୁ ସମୟରେ ନିଷ୍କ୍ରିୟ ମଧ୍ୟ କରିଦେଇଛି ।

ଅଧ୍ୟାପକ ତିଉରି ସର୍ବଦା ସମାଜର ପ୍ରଗତି କାମନା କରି ଆସିଛନ୍ତି ; କିନ୍ତୁ ଧର୍ମ ଯେ ସେଥିରେ ଅନ୍ୟତମ ବାଧକ ଏକଥା ସେ ଭଲ ଭାବେ ଉପଲବ୍‌ଧି କରିଛନ୍ତି । ଧର୍ମ ସମ୍ବନ୍ଧରେ ସେ କହନ୍ତି ଯେ ଏହା ଏକ ଭୟଙ୍କର, ଭ୍ରମାତ୍ମକ, ଅନୈତିକ, ଅତି ପ୍ରାକୃତିକବାଦ ଏବଂ

---

* "Neo Platomism in Religion"—Edward L. Schoub—The Monist No2-288.

ଏହା ସର୍ବଦା * (1) "at war with the habits of mind congruous with democracy and with Science." ସେଥିପାଇଁ ଅଧ୍ୟାପକ ଡିଉଇ ଧର୍ମକୁ ମଧ୍ୟ ଶିକ୍ଷାୟତନମାନଙ୍କର ପାଠ୍ୟକ୍ରମରେ ନ ରଖିବାକୁ ଦୃଢ଼ମତ ପୋଷଣ କରି ଯାଇଛନ୍ତି । ଏତଦ୍‌ବ୍ୟତୀତ ସେ ଉକ୍ତ ପାରମ୍ପରିକ ଧର୍ମର ଯେପରି ଅଧିକ ପ୍ରସାର ନହୁଏ, ସେଥିପାଇଁ ମଧ୍ୟ ସେ ମନୁଷ୍ୟ ସମାଜକୁ ଏକ ଚେତାବନୀ ଶୁଣାଇଛନ୍ତି । ଏଥି ସକାଶେ ଏକ "Laissez faire" ଅନୁସୃତ ହେଉ ବୋଲି ସେ ଦାବୀ କରିଛନ୍ତି । ସେ କହନ୍ତି—
* (2) It should not be motivated by Leziness nor cynicism.

Cynicism "but". by "honesty, courage, sobriety and faith."

ତାଙ୍କ ମତରେ ଧର୍ମର ଅଧଃପତନ କେବେଠାରୁ ଘଟିସାରିଛି । ସେଥିପାଇଁ ଧର୍ମଯାଜକ ତଥା ଧର୍ମର ବଡ଼ପଣ୍ଡାମାନେ ପୂର୍ଣ୍ଣତଃ ଦାୟୀ । ଧର୍ମକୁ ଏବଂ ଧର୍ମର ସତ୍ୟାନୁଭୂତିକୁ ଯେଉଁମାନେ ଏକଚାଟିଆ କରିନେଇଛନ୍ତି ବୋଲି ଭାବୁଛନ୍ତି, ସେହିମାନେ ହିଁ ଧର୍ମକୁ ବୁଝିନାହାନ୍ତି କି, ଧର୍ମର ଧାର ଧାରନ୍ତି ନାହିଁ । ଫଳରେ ଧର୍ମ ଯୋଗୁଁ ହିଁ ସମାଜ ଧ୍ୱସ୍ତ ବିଧ୍ୱସ୍ତ ହୋଇଯାଇଛି । (Pretention to monopolise truth and to make private possession of spiritual insight and aspirations ) । ସେ କହନ୍ତି ଧର୍ମର ଗ୍ଲାନି ଏବଂ ଅଧଃପତନରେ ଧର୍ମର ପରାଭବ । ଧର୍ମକୁ ନୂତନ ରୂପେ ବୁଝିବାକୁ ମନୁଷ୍ୟ ଏଯାବତ ଉଦ୍ୟମ କରି ନାହିଁ । ପ୍ରକୃତ ଧର୍ମରେ ହିଁ ମନୁଷ୍ୟ ସମାଜର ହିତ ପ୍ରଗତି ଏବଂ ମଙ୍ଗଳ ନିହିତ । ବୁଦ୍ଧି ହିଁ ଧର୍ମର ପ୍ରାଣ, ତେଣୁ ବୁଦ୍ଧିଦ୍ୱାରା ଧର୍ମର ପୁନର୍ଗଠନ ତଥା ଆମୂଳଚୂଳ ପରିବର୍ତ୍ତନ ସେ କାମନା କରିଛନ୍ତି । ତେଣୁ ଧର୍ମ ବାସ୍ତବଧର୍ମୀ ହେବା ଉଚିତ । ତାଙ୍କର କନ୍ମିଆ ରଚନାବଳୀରୁ ସ୍ପଷ୍ଟଭାବେ ଜଣାପଡ଼େ ଯେ, "........religion was no more than an interesting survival of an earlier period in mental evolution, a touching expression of the naive longings and poetic imagination of primitive man....Religion used to say was almost a hacknyed expression of these students. Some of them

* (1) ' Religion and our School—The Herbert Journal—VI 1903 Page—808
* (2) Religion and our School—The Herbert Journal—VI 1908 Page—803.

grieved at the death of religion, others rejoiced, but all were practically unanimous in admitting the fact of her decease."

ଏତିଏବେ ଅଧ୍ୟାପକ ଡିଉଇଙ୍କ ମତରେ ମନୁଷ୍ୟର ଧର୍ମାନୁଭୂତି ଏକ ବାସ୍ତବରୂପ ନେଇ ମନୁଷ୍ୟର ଜୀବନ ସଂଗ୍ରାମରେ ସାହାଯ୍ୟ କରିବା ଉଚିତ । * (1) The religious experience is a reality in so far as in the midst of efforts to foresee and regulate future objects.... enveloping whole.' ଅଧ୍ୟାପକ ଡିଉଇ ତଥା ତାଙ୍କର ସମସ୍ତ ସ୍ତାବକ ଅନୁଗାମୀମାନେ ମଧ୍ୟ 'ଧର୍ମ'କୁ ପ୍ରୋକ୍ତ ଅର୍ଥରେ ବୁଝିବାକୁ ଉଦ୍ୟମ କରିବା ସଙ୍ଗେ ସଙ୍ଗେ ଧର୍ମର ଏକ ସାମାଜିକ ମୂଲ୍ୟବୋଧ ନିରୂପଣ କରିଛନ୍ତି । ଧର୍ମର ପୁରାତନ ମୂଲ୍ୟବୋଧ କାଳ ସଙ୍ଗେ ତାଳି ଦେଇ ସାଂପ୍ରତିକ ସମାଜର ପରିସ୍ଥିତି ଓ ସଂସ୍କୃତିକୁ ନେଇ ନବନବ ସାମାଜିକ ମୂଲ୍ୟବୋଧ ସୃଷ୍ଟି କରିବାରେ ସହାୟକ ହେବା ଉଚିତ । କେବଳ ଭଗବାନ ବା ପରମେଶ୍ୱର ପୂଜା, ଅର୍ଚ୍ଚନା ଏବଂ ଆରାଧନାର ପ୍ରତୀକ ନ ହୋଇ, ସେ ଗୋଷ୍ଠୀ ଏବଂ ସମାଜସ୍ଥ ସମସ୍ତଙ୍କ ସାମାଜିକ ପ୍ରତିଷ୍ଠାର କେନ୍ଦ୍ରସ୍ଥଳୀ ହେବା ଉଚିତ । ଏଡ୍‌ୱାର୍ଡ୍ ଏସ୍ ଏମ୍ସ ଡିଉଇଙ୍କ ମତକୁ ଅବଲମ୍ବନ କରି ତାଙ୍କର—* (2) 'Functional interpretation of Religion—a critique.' ଗ୍ରନ୍ଥରେ କହିଛନ୍ତି ଯେ—"Religion becomes a genuinely social experience in which self conscious persons, through fellowship with their neighbours, devotion to the community, and worship of its indwelling spirit, seek for longer realisation with increasing self knowledge and a more delicate sense of ethical, aesthetic, cognitive and social values." କେତେକ କହନ୍ତି ଧର୍ମ ଏବଂ ଧର୍ମାନୁଭୂତି ବ୍ୟକ୍ତିନିଷ୍ଠ ହେବା ଉଚିତ ନୁହେଁ । ତେଣୁ ସମସ୍ତ ଧର୍ମାନୁଷ୍ଠାନ, ଧର୍ମାନୁଭୂତି ଗୋଷ୍ଠୀ ଏବଂ ସମାଜ ପାଇଁ ଉଦ୍ଦିଷ୍ଟ ହେବା ଉଚିତ । ସମସ୍ତ ପ୍ରକାର ମାନସିକ ଅନୁଭୂତି ଯଥା ଧର୍ମାନୁଭୂତି, ସୌନ୍ଦର୍ଯ୍ୟାନୁଭୂତି, ଜ୍ଞାନାନୁଭୂତି ତଥା ନୈତିକାନୁଭୂତି ଇତ୍ୟାଦି ସାଂପ୍ରତିକ ସାମାଜିକ ପରିସ୍ଥିତିକୁ ଅନୁଧ୍ୟାନ କରିବା ପାଇଁ ଏକ • ଅସ୍ତ୍ରରୂପେ

---

* (1) Human Nature and Conduct Page—236.

* (2) Functional Interpretation of Religion—a critique-1917.

ବ୍ୟକ୍ତ ହେବା ଉଚିତ । * (1) 'Mental life is "an instrument of adaptation by which organism itself adjusts to the environment.'— ପଣ୍ଡିତ ଏମ୍ସଙ୍କ ମତରେ ଧର୍ମ ମନସ୍ତତ୍ତ୍ୱର ଶୃଙ୍ଖଳା ଓ ନିୟମ ଉପରେ ଆଧାରିତ । ଠିକ୍ ତଦନୁରୂପ ଭାବେ ଦାର୍ଶନିକ ଇର୍ଭିଙ୍ଗ କିଙ୍ଗ୍ର— 'Development of Religion' ପୁସ୍ତକରେ ଧର୍ମକୁ ଏକ ମାନସିକ ପ୍ରକ୍ରିୟା ରୂପେ ଗ୍ରହଣ କରି ନେଇଛନ୍ତି ; କିନ୍ତୁ ଅତୀନ୍ଦ୍ରିୟାନୁଭୂତ ଜୀବନର ଚରମ ଏବଂ ପରମ ମୂଲ୍ୟାର୍ଥେ ଯେ ସର୍ବଦା ଅନୁଭାବ୍ୟ ତାହା ସେ ସ୍ୱୀକାର୍ କରି, ତାକୁ ଧର୍ମ ସମ୍ବନ୍ଧ ଜଡ଼ିତ କରିଦେଇଛନ୍ତି । ସେ କହନ୍ତି — * (2) "The Concept of God" 'is a legitmate way for the religious mind, to symbolise its faith in the reality of life in so far as such symbolism satisfies and helps, it represents a gunuine aspect of reality." କିନ୍ତୁ ଯେଉଁମାନେ ସାଧନବାଦକୁ ଗ୍ରହଣ କରି ନେଇଛନ୍ତି (ଯଥା ଅଧ୍ୟାପକ ଡିଉଇ) ସେମାନଙ୍କ ପାଇଁ ଇର୍ଭିଙ୍ଗଙ୍କ ମତ କେତେକାଂଶରେ ବିପଦ ସୃଷ୍ଟି କରିଛି । କାରଣ ଧର୍ମକୁ ସେ ଟିକିଏ ଅତୀନ୍ଦ୍ରିୟାନୁଭବ ଆଡ଼କୁ ନେଇଯାଇଛନ୍ତି । ତାଙ୍କ ମତରେ ପୁଣି ଧର୍ମ ଏବଂ ନୀତି ମଧ୍ୟରେ କିଛି ପ୍ରଭେଦ ନାହିଁ । * (3) The distinction between morality and religion is not real. No genuinity moral consciousness can be without religious quality." ପରିଶେଷରେ ସେ ପୁଣି କହିଛନ୍ତି ଯେ, "ଯେଉଁ ବିଶ୍ୱରେ ଆମ୍ଭମାନଙ୍କର ସ୍ଥିତି ଅଛି, ସେହି ବିଶ୍ୱରେ ଆମେ ଆମର ଅନିର୍ଦ୍ଦିଷ୍ଟ ପରମଲକ୍ଷ୍ୟର ପ୍ରାପ୍ତି ପାଇଁ ଯେଉଁ ପ୍ରେରଣା ଓ ବିଶ୍ୱାସ ରଖିବା କଥା, ତାହାହିଁ ଏହି 'ଧର୍ମ' ଦ୍ୱାରା ସମ୍ଭବ ହୋଇଥାଏ ।

ଡିଉଇଙ୍କର ଧର୍ମ ସମ୍ବନ୍ଧୀୟ ସମସ୍ତ ମତାମତ ଆମେ ଦେଖିବାକୁ ପାଉ ତାଙ୍କ ପୁସ୍ତକ 'A common Faith'ରେ । ଜୀବନ ଏବଂ ବିଶ୍ୱ ସମ୍ବନ୍ଧରେ ପ୍ରଜ୍ଞାନୀ ଉକ୍ତି ଏଥିରେ ଅନେକ ନୂତନ ଚିନ୍ତାଧାରାର ପ୍ରବର୍ତ୍ତନ କରାଯାଇଛନ୍ତି । ଡିଉଇ ନିଜେ ତାଙ୍କର ଅନୁଗାମୀ ଏମ୍ସ ଏବଂ ଇର୍ଭିଙ୍ଗଙ୍କର ଧର୍ମ ସମ୍ବନ୍ଧୀୟ ମତାମତଗୁଡ଼ିକରେ କିଛି କ୍ଷେତ୍ରରେ

---

* (1) The Psychology of Religious Experience-1910 Page—15

* (2) Development of Religion—1910 Page-353.

* (3) Development of Religion—1910 Paeg-286

ସଂପୂର୍ଣ୍ଣ ଏକମତ ହୋଇ ନାହାନ୍ତି । ଡିଉଇ କହନ୍ତି-*(1) "Legends and myths grow up in past as decorative dressings, in response to the irrepressible human tendencies towards story -telling, and in part as attempts to explain ritual practices." ଧର୍ମର ତତ୍ତ୍ୱ ଏବଂ ତାର ଇତିହାସକୁ ଏକ ବାସ୍ତବ ଏବଂ ଇନ୍ଦ୍ରିୟାନୁଭୂତ ପ୍ରଣାଳୀ ଦ୍ୱାରା ପରୀକ୍ଷା କରିବାକୁ ଡିଉଇ ଦୃଢ଼ମତ ପୋଷଣ କରି ଯାଇଛନ୍ତି । ପାରମ୍ପରିକ ଆସ୍ତିକତା ଏବଂ ନାସ୍ତିକତା ମଧ୍ୟରେ ଡିଉଇ ଧର୍ମକୁ ଏକ ଅତୀନ୍ଦ୍ରିୟାନୁଭବବାଦ ରୂପେ ଅଭିହିତ କରିଛନ୍ତି । ସ୍ୱାଧୀନତା ତଥା ଅନ୍ଧବିଶ୍ୱାସ ବଳରେ ପୂର୍ବରେ କାଳକୁ ଯାହାକୁ ଅତିଭୌତିକ ଏବଂ ଅତୀନ୍ଦ୍ରିୟାନୁଭୂତିକ ବୋଲି ଆମେ କହୁ, ତାହାକୁ ଧର୍ମ ଭିତରେ ପ୍ରବେଶ କରାଇ ଦିଆଯାଇଛି ବୋଲି ଅଧ୍ୟାପକ ଡିଉଇ ଅଭିଯୋଗ କରିଛନ୍ତି । ସେ କହନ୍ତି—* (2) When there is no insight into the cause of unusual events,belief in the supernatural is itself 'natural' in the sense of natural," ଜୀବନ ତାର ପାରିପାର୍ଶ୍ୱିକ ଅବସ୍ଥା ଏବଂ ଅନାନ୍ୟ କାରଣ ଗୁଡ଼ିକୁ ବିଗ୍ରହକୁ ନେଇ ଜୀବନର ସମସ୍ୟା ବଳୀକୁ ବୁଦ୍ଧିର ପ୍ରୟୋଗ ଦ୍ୱାରା ସମାଧାନ କରିହେବ ବୋଲି ଡିଉଇ ବିଶ୍ୱାସ ପୋଷଣ କରନ୍ତି । ଡିଉଇଙ୍କ ମତରେ * (3) "The wisdom of supernaturalism consists in administration of the temporal, finite and human in relation to the eternal and infinite, by means of dogmas and cult, rather than in regulation of the events of life by understanding the actual conditions." ଡିଉଇ ଅନୁଭବ କରିଛନ୍ତି ଯେ ଅତୀନ୍ଦ୍ରିୟାନୁଭବବାଦ ଏବଂ ବୈଜ୍ଞାନିକ ସମାଜବାଦ ପରସ୍ପର ବିରୋଧୀ ଅଟନ୍ତି । ତାଙ୍କ ମତରେ ଅତୀନ୍ଦ୍ରିୟାନୁଭବବାଦ ବୌଦ୍ଧିକତା ଦୃଷ୍ଟିରୁ ସମ୍ପୂର୍ଣ୍ଣ ଅସାର ଏବଂ ନୈତିକତା ଦୃଷ୍ଟିରୁ ନିନ୍ଦନୀୟ ଭ୍ରମାତ୍ମକ ମଧ୍ୟ । * (4) "In short he makes the charge that supernaturalism is intellectually false and morally vicious." ଧର୍ମର ଏପରି ଏକ ମାୟାତ୍ମକ ଗଣ୍ଡିରୁ ଏବଂ କବଳରୁ ମନୁଷ୍ୟଙ୍କୁ ଉଦ୍ଧାର

---

* (1) A common Faith—Page-59
* (2) Ibd—Page-69
* (3) Experience and Nature—Page-55
* (4) Interpretation of Religion - by E. L. Schaub Phil of J. Dewey—Page-408

କରିବା ପାଇଁ ଅଧ୍ୟାପକ ଡିଉଇ ନିର୍ଦ୍ଦେଶ ଦେଇଛନ୍ତି  ସେ ପୁନଶ୍ଚ ତାଙ୍କ 'ସାଧାରଣ ବିଶ୍ୱାସ' ପୁସ୍ତକରେ କହିଛନ୍ତି ଯେ 'ସାଧାରଣ ବିଶ୍ୱାସ' ଧର୍ମ ନୁହେଁ ବରଂ ଏହା ଧର୍ମଭିତ୍ତିକ ସମସ୍ତ ପ୍ରକାର ବିଶ୍ୱାସରୁ ଏବଂ ମନୋବୃତ୍ତିରୁ ଉଦ୍ଧାର ପାଇବା ପାଇଁ ଏକ ବିଦ୍ରୋହ ଘୋଷଣା ମାତ୍ର । ଧର୍ମ ଏବଂ ଧାର୍ମିକତା କୌଣସି ଏକ ନିର୍ଦ୍ଦିଷ୍ଟ ସତ୍ତା ବା ବିଶ୍ୱାସ ନୁହେଁ— ଏହାର କୌଣସି ରୂପରେଖ କିମ୍ବା ଅସ୍ତିତ୍ୱ ନାହିଁ, ଏହା ଚିରନ୍ତନ କିମ୍ବା ସନାତନ ମଧ୍ୟ ନୁହେଁ । ଧର୍ମ ଏବଂ ଧାର୍ମିକତା ମନୁଷ୍ୟର ଏକ ଦୃଷ୍ଟିଭଙ୍ଗୀ ତଥା ମନୋବୃତ୍ତି, ଯାହାଦ୍ୱାରା ସେ ବିଶ୍ୱର ସମସ୍ତ ଘଟଣା ଓ ପରିସ୍ଥିତିଗୁଡ଼ିକୁ ମନମୁତାବକ ସଜାଡ଼ି ଦେଇ ପାରିବ । * **"It denotes attitude that may be taken towards every object and every proposed end, or ideal."** ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ଧର୍ମ ଏବଂ ଧାର୍ମିକତା ମନୁଷ୍ୟର ଏକ ସାମୂହିକ ଦୃଷ୍ଟିଭଙ୍ଗୀର ଏକ ଅବିଚ୍ଛିନ୍ନ ଅଙ୍ଗ ଅଟେ ଏବଂ ଏହା 'ମନୁଷ୍ୟର ଅନ୍ୟାନ୍ୟ ପ୍ରକାର ଅନୁଭୂତି ଠାରୁ କଦାପି ଭିନ୍ନ ନୁହେଁ ।

* A Common Faith - Page-9.

## ସପ୍ତମ ପରିଚ୍ଛେଦ

# ଡିଉଇଙ୍କ ଜ୍ଞାନ ମୀମାଂସା

ଦାର୍ଶନିକ ଆଲୋଚନାଗୁଡ଼ିକରେ ଜ୍ଞାନ ଏବଂ ତତ୍ତ୍ୱ ପରସ୍ପର ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଜ୍ଞାନ ମୀମାଂସାକୁ ବାଦ ଦେଇ ତତ୍ତ୍ୱ ମୀମାଂସାର ଆଲୋଚନା ସର୍ବଦା ଅସମ୍ପୂର୍ଣ୍ଣ ଅଟେ । ଅଧ୍ୟାପକ ଡିଉଇଙ୍କର ତତ୍ତ୍ୱ ମୀମାଂସାକୁ ଆଲୋଚନା କଲାବେଳେ, ତାଙ୍କର ଜ୍ଞାନ ମୀମାଂସାର କିଞ୍ଚିତ ଆଲୋଚନା ଏଠାରେ କରାଯିବା ଆବଶ୍ୟକ । ଅବଶ୍ୟ ତାଙ୍କର ଜ୍ଞାନ ମୀମାଂସା ସମ୍ପର୍କରେ ପୂର୍ବରୁ କିଛି କୁହାଯାଇଛି ।

କୌଣସି ଏକ ପରିସ୍ଥିତିକୁ ଅର୍ଥପୂର୍ଣ୍ଣ କରି ପ୍ରକାଶ କରୁଥିବା 'ବକ୍ତବ୍ୟ' ତଥା ତର୍କବାକ୍ୟଗୁଡ଼ିକର ବ୍ୟବହାର ଏବଂ ସେଗୁଡ଼ିକର ଯଥାଯଥ ପ୍ରୟୋଗ ଏବଂ ସର୍ବୋପରି ସେଗୁଡ଼ିକର ବିଶ୍ଳେଷଣ, ସମୀକ୍ଷା ତଥା ବ୍ୟାଖ୍ୟା ଉପରେ ପ୍ରକୃତ 'ଜ୍ଞାନ' ନିହିତ । ଏହିପରି ଏକ ସିଦ୍ଧାନ୍ତ ଦେଇ ପ୍ରଜ୍ଞାମୀ ଡିଉଇ ଜ୍ଞାନ ବିଷୟଟିକୁ ବୁଝିବାକୁ ଉଦ୍ୟମ କରିଛନ୍ତି । ଜ୍ଞାନ ମୀମାଂସା କହିଲେ ଜ୍ଞାନତତ୍ତ୍ୱ କିମ୍ବା ସାକ୍ଷାତ-ଜ୍ଞାନ ଏବଂ ତାର ଅର୍ଥଗତ ସତ୍ୟାନୁସନ୍ଧାନର ଦାର୍ଶନିକ କଷ୍ଟି, ବିଶ୍ଳେଷଣ ଓ ସମୀକ୍ଷାକୁ ବୁଝାଏ । ଡିଉଇଙ୍କ ଜ୍ଞାନ ମୀମାଂସାରେ ଦୁଇଟି ଦିଗ ଦେଖିବାକୁ ମିଳେ—ଗୋଟିଏ ହେଲା ଜ୍ଞାନ ମୀମାଂସୀୟ ଏବଂ ଅନ୍ୟଟି ହେଲା ପ୍ରସଙ୍ଗାତ୍ମକ ଅଥବା ବୃଦ୍ଧି-ସୃଷ୍ଟି ସମ୍ବନ୍ଧୀୟ । ଡିଉଇ ତାଙ୍କର ତର୍କଶାସ୍ତ୍ରରେ ସ୍ପଷ୍ଟ ଭାବେ କହିଛନ୍ତି ଯେ "Knowledge has no meaning independent of enquiry"—ଏହାହିଁ ତାଙ୍କର ଜ୍ଞାନ ମୀମାଂସାର ପ୍ରସଙ୍ଗାତ୍ମକ ଦିଗ । କିନ୍ତୁ ସେ ଜ୍ଞାନ ମୀମାଂସୀୟ ଦିଗଟିକୁ ବିରୋଧ କରିଛନ୍ତି—ସେ କହନ୍ତି "I object knowledge as supposed to have meaning apart from connection with and reference to enquiry." ଯଦି ଆମେ ଏହି ଜ୍ଞାନ ମୀମାଂସାର ଉକ୍ତ ଜ୍ଞାନ ମୀମାଂସୀୟ ଅର୍ଥଟିକୁ ଗ୍ରହଣ କରିନେଉ, ତାହାହେଲେ ଅନୁସନ୍ଧାନର ମୂଲ୍ୟ ତଥା ଅର୍ଥ କିଛି ଆଉ ରହିବ ନାହିଁ ବୋଲି ପ୍ରଜ୍ଞାମୀ ଡିଉଇ ଅନୁଭବ କରିଛନ୍ତି । ଫଳରେ ଆମେ କେତେକ ପରମ୍ପରାଗତ, ସ୍ଥାଣୁ ତଥା ତଥାକଥିତ ସନାତନ ସତ୍ୟଗୁଡ଼ିକୁ ଗ୍ରହଣ କରି ନେବାକୁ ବାଧ୍ୟ ହେବା—ଏତଦ୍‌ଭିନ୍ନ ଆମକୁ ମଧ୍ୟ ଏକ ଜ୍ଞାନ ମୀମାଂସୀୟ

ଦ୍ୱୈତବାଦ ଭିତରେ ବୁଝାଇବାକୁ ପଡ଼ିବ । (1) "Because they are not constructed upon the ground of operation and conceived and formed in terms of preconceptions derived from various sources, mainly cosmological in ancient and mainly posychological ( directly or indirectly ) in modern theory.'' ତାଙ୍କ ମତରେ ଜ୍ଞାନ ପ୍ରଯତ୍ନାତ୍ମକ ତଥା ଦୃଷ୍ଟି-ସୃଷ୍ଟି ସମ୍ବନ୍ଧୀୟ ହେବା ବିଧେୟ । କାରଣ ଜ୍ଞାନ, ଅନୁସନ୍ଧାନର ଅଧୀନ ଅଟେ । ବିନା ଅନୁସନ୍ଧାନରେ ଜ୍ଞାନାର୍ଜନ ଅସମ୍ଭବ । ତେଣୁ 'ଅନୁସନ୍ଧାନହିଁ' ଜ୍ଞାନର ଜନନୀ । କାରଣ ଅନୁସନ୍ଧାନରୁ ତର୍କବାକ୍ୟ ତଥା ବକ୍ତୃତର ସୃଷ୍ଟି ହୋଇଥାଏ ଏବଂ ଉକ୍ତ ତର୍କବାକ୍ୟଗୁଡ଼ିକ ଉତ୍ପନ୍ନ ହୋଇଥାଏ କେବଳ ପରିସ୍ଥିତିଗତ ଦତ୍ତସାମଗ୍ରୀଗୁଡ଼ିକୁ ଅନୁସନ୍ଧାନ କରିବାରେ । ଅର୍ଥାତ୍ ପରିସ୍ଥିତି ଏବଂ ତାର ଦତ୍ତସାମଗ୍ରୀ ଗୁଡ଼ିକ ଉପରେ ଯେଉଁ ଅନୁସନ୍ଧାନ ଚାଲେ ତାର ପରିଣାମ ଉପରେ ପରୋକ୍ଷ ଭାବରେ ଜ୍ଞାନର ସିଦ୍ଧତା ତଥା ସତ୍ୟତା ସମ୍ପୂର୍ଣ୍ଣ ଭାବେ ନିର୍ଭର କରେ ।

ମନୁଷ୍ୟର ଚିନ୍ତା ବାସ୍ତବାଭିମୁଖୀ । ପରିସ୍ଥିତିକୁ ସଜାଡ଼ିବାହିଁ ଚିନ୍ତାର କାର୍ଯ୍ୟ, ପୁଣି ପରିସ୍ଥିତିକୁ ସଜାଡ଼ିବା ଅନୁସନ୍ଧାନ ସାପେକ୍ଷ ; ତେଣୁ ସମସ୍ତ ତର୍କବାକ୍ୟ ବା ପ୍ରପୋଜିସନ ପରିସ୍ଥିତିକୁ ସଜାଡ଼ିବା ଅନୁସନ୍ଧିତ୍ସା ଉପରେ ନିର୍ଭରଶୀଳ ହୋଇ ରହିଥାଏ । ତେଣୁ ଡିଉଇ କହନ୍ତି—(2) "The ultimate ground of every valid proposition and warranted judgment consists in some existential reconstruction ultimately effected." କିନ୍ତୁ ଏପରିଭାବେ ଜାଣିବା ଅର୍ଥ ଏତାଦୃଶ ଅନୁସନ୍ଧାନ ଲବ୍ଧ ଜ୍ଞାନ ନିରପେକ୍ଷ ଓ ଚରମ ନୁହନ୍ତି । ଏହା ପରିଣାମ ଏବଂ ଅନ୍ୟାନ୍ୟ ପରିସ୍ଥିତିଗତ କ୍ରମାନୁଗତିକ ପରିବର୍ତ୍ତନକୁ ପ୍ରତୀକ୍ଷା କରିଥାଏ । ସେଥିପାଇଁ ବୋଧହୁଏ ମିଷ୍ଟର 'ଲଭ୍‌ଦୟ' ଡିଉଇଙ୍କ 'ଜାଣିବାକୁ' ବା 'ଜ୍ଞାନକୁ' ବ୍ୟଙ୍ଗ କରି କହିଛନ୍ତି—(3) "I am about to have known." ଡିଉଇ ତାଙ୍କର 'Quest for certainty' ପୁସ୍ତକରେ କହିଛନ୍ତି ଯେ 'ଜ୍ଞାନ' ପୂର୍ବରୁ 'ସତ୍ତା' ଅବସ୍ଥିତ ରହିଥାଏ ଏବଂ ଏହା କାହାର 'ଜାଣିବାକୁ' ପ୍ରତୀକ୍ଷା କରେ ନାହିଁ (4) The true and valid object of knowledge is that which has 'being' prior to and independent of the operation of knowing."

---

(1) Logic—J. Dewey—Page-334-35.

(2) Logic—J. Dewey—Page-160.

(3) Phil. of J. Dewey—Page-203.

(4) Quest for certainty—Dewey—Page-196.

ଏଥିରୁ ସ୍ପଷ୍ଟ ସୂଚିତ ହୁଏ ଯେ ଡିଉଇଙ୍କ ଜ୍ଞାନାହରଣ ପ୍ରଣାଳୀ ପୂର୍ଣ୍ଣତଃ ବିଜ୍ଞାନର ପ୍ରଣାଳୀ ଏବଂ ପ୍ରୟୋଗାତ୍ମକ । ଅର୍ଥାତ୍ ପ୍ରଜ୍ଞାମ ଡିଉଇ ସର୍ବଦା ପ୍ରତ୍ୟକ୍ଷ ଜ୍ଞାନ ଉପରେ ଗୁରୁତ୍ୱ ଆରୋପ କରିଥିବା ମନେହୁଏ ଏବଂ ଏହା ପ୍ରଧାନତଃ ବାସ୍ତବଧର୍ମୀ, ଜୀବନାଭିମୁଖୀ ଓ ସର୍ବୋପରି ସମାଜଧର୍ମୀ ଅଟେ ।

## "ଡିଉଇଙ୍କ ତତ୍ତ୍ୱ ମୀମାଂସା"

ପ୍ରାଚୀନ କାଳରୁ ବିଶ୍ୱର ଦାର୍ଶନିକମାନେ ଜ୍ଞାନ ଏବଂ ତତ୍ତ୍ୱକୁ ଯେଉଁ ପାରମ୍ପରିକ ଦୃଷ୍ଟିରେ ଦେଖି ଆସିଛନ୍ତି, ଅଧ୍ୟାପକ ଡିଉଇ ସେ ଦୁଇଟିକୁ ସେହି ଦୃଷ୍ଟିରୁ ବିଚାର କରିନାହାନ୍ତି ; କିନ୍ତୁ ଉକ୍ତ ବିଷୟ ଦୁଇଟିକୁ ସେ ବହୁ କ୍ଷେତ୍ରରେ ଗୋଳମାଳିଆ କରିଦେଇଛନ୍ତି ପରି ମନେହୁଏ । ହୁଏତ ଏହାର କାରଣ ଏତିକି ହୋଇପାରେ ଯେ, ସେ ପ୍ରଧାନତଃ ଦର୍ଶନର ଗତାନୁଗତିକତା ତଥା ପରମ୍ପରାକୁ ଭାଙ୍ଗି ଦେବାକୁ ଚାହିଁଛନ୍ତି ତେଣୁ ବିଶେଷ କରି ତତ୍ତ୍ୱ ମୀମାଂସାକୁ ସେ ... ଙ୍କର ଆଲୋଚନା କ୍ଷେତ୍ରରେ ଏକ ଗୌଣ ସ୍ଥାନ ଦେଇଛନ୍ତି ଅବଶ୍ୟ ଆଧୁନିକ ତଥା ସାଂପ୍ରତିକ ଦାର୍ଶନିକମାନେ ପ୍ରାୟ ସାମୂହିକ ଭାବେ ସମ୍ପ୍ରତି ଏକ ନୂତନ ତଥା ଭିନ୍ନ ଦୃଷ୍ଟିରେ ଏପରି ଭାବେ ଦେଖିବାକୁ ଆରମ୍ଭ କରିଛନ୍ତି ପ୍ରଜ୍ଞାମ ଡିଉଇ ହୁଏତ ସେତିକି କରିବାକୁ କୁଣ୍ଠା ପ୍ରକାଶ କରିଛନ୍ତି । ଅଧ୍ୟାପକ ଡିଉଇଙ୍କର ତତ୍ତ୍ୱ ମୀମାଂସାର ବକ୍ତବ୍ୟ ପ୍ରଧାନତଃ ଆମେ ଦେଖିବାକୁ ପାଇବା ତାଙ୍କର "Experience and Nature" ପୁସ୍ତକରେ । ସେ ଉକ୍ତ ପୁସ୍ତକରେ 'Metaphysics' ତଥା 'ତତ୍ତ୍ୱ ମୀମାଂସାକୁ' ଏହିପରି ଭାବେ ବୁଝିଛନ୍ତି,ଯଥା — Metaphysics is a statement of the genetic trades manifested by existances of all kinds without regard to their differentiations into physical and mental." Page-412. ହେଲେହେଁ ସେ କହନ୍ତି ଯେ ତତ୍ତ୍ୱର (ସତ୍ତା) ଏହି ସଂଜ୍ଞା ପୂର୍ଣ୍ଣତଃ ସମୀକ୍ଷା ସାପେକ୍ଷ ... ବିନା ସମୀକ୍ଷାରେ ତତ୍ତ୍ୱର ଅର୍ଥ କିଛି ରହେନା ! ଉକ୍ତ ସମୀକ୍ଷା ଜୀବନର ପରିସ୍ଥିତିକୁ ଆଧାର କରି ଗଢି ଉଠିବା ସଙ୍ଗେ ସଙ୍ଗେ ଜୀବନର ଆଦର୍ଶବୋଧ ତଥା ମୂଲ୍ୟବୋଧ ନିରୂପଣ କରିଥାଏ ମନୁଷ୍ୟର ଜୀବନ-ସଂଗ୍ରାମ ତା'ର ଦୁଃଖ-ଦୈନ୍ୟ, ତାର ଆଶା-ଆକାଂକ୍ଷା ତଥା ଦୁଃଖମୁକ୍ତି ଅନ୍ୱେଷଣ କରିବାର ଅବାରିତ ପ୍ରବୃତ୍ତି ଉପରେ ତତ୍ତ୍ୱ ମୀମାଂସାର ପ୍ରକୃତ ଅର୍ଥ ନିହିତ ସେ କହନ୍ତି— ଏହି ବାସ୍ତବ, ସଙ୍କଟ ଏବଂ ସଂଘର୍ଷମୟ ଦୁନିଆ ହିଁ ତତ୍ତ୍ୱ ମୀମାଂସାର କ୍ଷେତ୍ର । ଏକ ଅତିପ୍ରାକୃତ ଏବଂ ଅଜ୍ଞାତ, ଅଚିନ୍ତ୍ୟନୀୟ, ଅଗୋଚର ତଥା ସନାତନ ସତ୍ତାକୁ ଆମେ ତତ୍ତ୍ୱ ମୀମାଂସା ବୋଲି କହି ନପାରୁ । (1) "This is the extent nd method of my

(1) Journal of Philosophy. Volume. XXIV-59

metaphysics, the large and constant features of human sufferings, enjoyments trials, failures and successes, together with the institutions of arts, science, technology, politics and religions which mark them, communicate genuine features of the world within which man lives.''

ଏଥିରୁ ସ୍ପଷ୍ଟ ଅନୁମିତ ହୁଏ, ଯେ ଅଧ୍ୟାପକ ଡିଉଇ ପାରମ୍ପରିକ ତତ୍ତ୍ୱ ମୀମାଂସାକୁ (Traditional Metaphysics) ଇନ୍ଦ୍ରିୟାନୁଭବ, ପ୍ରକୃତବାଦ ( Empirical Naturalism ) ରୂପେ ଗ୍ରହଣ କରି ନେଇଛନ୍ତି । ଏହାହିଁ ତାଙ୍କର ବୈଶିଷ୍ଟ୍ୟ ଏବଂ ଏଥିପାଇଁ ସେ ଇନ୍ଦ୍ରିୟାନୁଭବ ( Empirical method ) ପ୍ରଣାଳୀକୁ ପ୍ରୟୋଗ କରିଛନ୍ତି । ଡିଉଇଙ୍କର ତତ୍ତ୍ୱ ମୀମାଂସା କ୍ଷେତ୍ରରେ ଏପରି ଏକ ପ୍ରଣାଳୀକୁ ଗ୍ରହଣ କରିନେବାକୁ ସମାଲୋଚକ 'Arthur E. Murphy' ପସନ୍ଦ କରି ନାହାନ୍ତି । ସେ କହନ୍ତି, (1) 'The word empirical is perhaps not happy in this connection.'' ଯାହା ମେଟାଫିଜିକାଲ ଡିଉଇ ତାକୁ non-empiral ବୋଲି କହି ଉଡ଼ାଇ ଦେବାକୁ ବିଶେଷ ଉଦ୍ୟମ କରିଛନ୍ତି ; କିନ୍ତୁ ଅଧ୍ୟାପକ ଡିଉଇ ତତ୍ତ୍ୱ ମୀମାଂସାର (Metaphysics) ଏକ ନୂତନ ତଥା ନବ୍ୟ ନାମକରଣ କରିଛନ୍ତି, ତାହା ହେଉଛି "ଅନୁଭୂତ ଏବଂ ପ୍ରକୃତ" । ପ୍ରକୃତ କୋଳରେ ମାନବିକ ସମସ୍ୟାବଳୀର ଓ ପରିସ୍ଥିତିର ଉଦ୍ଭବ ଘଟେ । ସେହି ହେତୁ ସକଳ ମାନବିକ ପରିସ୍ଥିତିକୁ ଓ ସମସ୍ୟାବଳୀକୁ କେନ୍ଦ୍ରକରି ତାଙ୍କର 'ତତ୍ତ୍ୱ ମୀମାଂସା' ଗଢ଼ି ଉଠିଛି । ତାଙ୍କ ମତରେ ତତ୍ତ୍ୱ ମୀମାଂସା କହିଲେ ପ୍ରକୃତ ଏବଂ ମନୁଷ୍ୟର ଅନୁଭୂତିକୁ ବୁଝାଏ ମାତ୍ର । କାରଣ ସକଳ ମାନବିକ ପରିସ୍ଥିତିରେ ଆମେ ଦେଖିବାକୁ ପାଉ ସକଳ ପ୍ରକାର ପ୍ରାକୃତିକ ନିୟମ ଶୃଙ୍ଖଳା ସମସ୍ତ ପ୍ରକାର ପ୍ରସଙ୍ଗ ଏବଂ ଅସଙ୍ଗ ପ୍ରଣାଳୀ ଓ ଆପେକ୍ଷିକ [illegible] [illegible] ଗତି-ନିୟମ ବ୍ୟକ୍ତି-ଏକରୂପତ, ଚୂଡ଼ାନ୍ତ ଏବଂ ଦକ୍ଷତା ପରିସ୍ଥିତି [illegible] ବିଦ୍ୟମାନ । ଏହି ପ୍ରସଙ୍ଗରେ ଡିଉଇ ଯଥାର୍ଥ କହିଛନ୍ତି—(2) This human situation falls wholly within nature It ceflects to the traits of nature, it gives indisputable evidence that in nature itself qualities and relations, individuation and unioarmities, finalities and efficacies, contigencies

(1) Philosophy of J. Dewey—Page-218
(2) Experience and Nature — Page-4[illegible]

**and necessity are inextricably bound together"**—ଡିଉଇଙ୍କ ମତରେ ଅନୁଭୂତି ହେଉଛି ଜୀବନର କାୟିକ, ମାନସିକ ଏବଂ ସାମାଜିକ ଅନ୍ୟୋନ୍ୟ-ପ୍ରତିକ୍ରିୟାର ତଥା ପ୍ରକୃତିର ପରିଣାମଗତ ଏକ ଅଲଂଘ୍ୟ ଏବଂ ଅବାରିତଧାରା । ମନୁଷ୍ୟର ଏହି ବ୍ୟାପକ ଏବଂ ସର୍ବଗ୍ରାହୀ ଅନୁଭୂତି ହେଉଛି ପ୍ରକୃତିର ଏକ ବିଶେଷତ୍ୱ ଏବଂ ଏହାହିଁ ପ୍ରକୃତିର ପ୍ରକୃତ ସତ୍ତା ବା ଅଧିତତ୍ତ୍ୱ । ତେଣୁ ଏହାକୁ କେତେକ ଅନୁଭୂତିମୂଳକ ତତ୍ତ୍ୱ ମୀମାଂସା ବୋଲି ଅଭିହିତ କରିଥାନ୍ତି । କାରଣ ମନୁଷ୍ୟ ଏବଂ ପ୍ରକୃତି ମଧ୍ୟରେ 'ଅନୁଭୂତି' ସର୍ବଦା ସନ୍ନିଯୋଗ ଏବଂ ସମନ୍ୱୟ ରକ୍ଷା କରିଥାଏ । ତେଣୁ ଅନୁଭୂତି ସକଳ ଜ୍ଞାନର ମୂଳକଥା ଏବଂ ଏହା ପ୍ରଧାନତଃ ଅବ୍ୟବହିତ ସଂଜ୍ଞାତ୍ମକ ଅଟେ । ଡିଉଇ ଉକ୍ତ ଅବ୍ୟବହିତତାକୁ ଅଧିତତ୍ତ୍ୱ ରୂପେ ଗ୍ରହଣ କରିନେଇଛନ୍ତି । ଏଥିପାଇଁ ବୋଧହୁଏ ଦାର୍ଶନିକ ଶାନ୍ତାୟାନା ପ୍ରଜ୍ଞାନୀ ଡିଉଇଙ୍କ ପ୍ରକୃତିବାଦକୁ ସମାଲୋଚନା କରି କହିଛନ୍ତି ଯେ (1) "ଏହା ହେଉଛି ଏକ ମନୁଷ୍ୟର 'ଅନୁଭୂତି' ଏବଂ 'ପ୍ରକୃତି' ସର୍ବଦା ଅବାରିତ ଗତିରେ ଗତିଶୀଳ ଏବଂ ସମ୍ବନ୍ଧଶୀଳ । ତେଣୁ ମନୁଷ୍ୟର ଅନୁଭୂତି ହିଁ ସବୁକିଛି । କାରଣବାଦାର୍ଥେ 'ପ୍ରକୃତି' ହେଉଛି ବିଜ୍ଞାନର ବିଷୟ । ତେଣୁ ବିଜ୍ଞାନ ହିଁ ଶେଷକଥା ନୁହେଁ—ଅନୁଭୂତି ହିଁ ସକଳ ବିଷୟରେ ସାର । ଏଥିପାଇଁ ପ୍ରଜ୍ଞାନୀ ଡିଉଇ କହିଛନ୍ତି ଯେ (2) **"Science is not a final thing, the final thing is appreciation and use of things of direct experience.'** କିନ୍ତୁ ଏତିକି ଡିଉଇ କହିଦେବା ଦ୍ୱାରା ନିଜର ପୂର୍ବୋକ୍ତ ଇନ୍ଦ୍ରିୟାନୁଭବିକ ପ୍ରଣାଳୀକୁ ନିଜେ ଖଣ୍ଡନ କରୁଛନ୍ତି ବୋଲି କହିବାକୁ ପଡ଼ିବ । 'ଅନୁଭୂତିକୁ' ଜ୍ଞାନ ନୁହଁ ବୋଲି ଡିଉଇ ଅଭିହିତ କରିଛନ୍ତି । କାରଣ 'ଅନୁଭୂତି' ଏବଂ 'ପ୍ରକୃତି' ପରସ୍ପର ଅଭେଦ ଅଟନ୍ତି, କିନ୍ତୁ 'ଅନୁଭୂତି'କୁ ଜ୍ଞାନାହରଣର ଏକ ଉପାୟ ରୂପେ ଡିଉଇ ଯଦି ଗ୍ରହଣ କରିନେଇଥାନ୍ତେ, ତାହାହେଲେ ହୁଏତ ଖୁବ୍ ଭଲ ହୋଇଥାନ୍ତା ବୋଲି ବହୁ ସମାଲୋଚକ ମନେକରନ୍ତି । ଯେ ଯାହା ହେଉନା କାହିଁକି ଡିଉଇ ନିଜର ତତ୍ତ୍ୱ ମୀମାଂସାକୁ "ପ୍ରକୃତିବାଦୀୟ ତତ୍ତ୍ୱ ମୀମାଂସା" ରୂପେ ଅଭିହିତ କରିଛନ୍ତି ।

---

(1) Naturalitic Phil of J. Dewey—by J. Santiyana
(2) Experience and Nature—Page-137

## ଅଷ୍ଟମ ପରିଚ୍ଛେଦ

# ଡଉଇଙ୍କ ଦର୍ଶନରେ ଜ୍ଞାନ ସିଦ୍ଧାନ୍ତ

ଦର୍ଶନକୁ ପ୍ରଧାନତଃ ଦୁଇଟି ଦିଗରୁ ବିଚାର କରାଯାଇପାରେ । ପ୍ରଥମତଃ କେତେକ ଦାର୍ଶନିକ ଆମର ଏହି ବାସ୍ତବ ଦୁନିଆକୁ ପ୍ରାଚୀନକାଳରୁ ଏକ ଅଳୀକ, ଅସାର ତଥା ଅବାସ୍ତବ ଦୁନିଆ ବୋଲି ଅଭିହିତ କରିଆସିଛନ୍ତି । ସେମାନଙ୍କ ମତରେ ଏ ଜଗତ ଊର୍ଦ୍ଧ୍ୱରେ ଆଉ ଏକ ପରମାର୍ଥିକ, ଇନ୍ଦ୍ରିୟାତୀତ, ଲୋକାତୀତ, ଅଗୋଚର ତଥା ପ୍ରାଗ୍‌ଅନୁଭବିକ ଜଗତ ଅଛି । ଏହା ହିଁ କେବଳ ସତ୍ୟ । ତେଣୁ ଆମର ଏହି ବାସ୍ତବ ଦୁନିଆ ତଥା ପ୍ରାକୃତିକ ଜଗତ ସମ୍ପୂର୍ଣ୍ଣ ଅଳୀକ ମିଥ୍ୟା ଏବଂ ମାୟା ବୋଲି ସେମାନେ ଘୋଷଣା କରିଯାଇଛନ୍ତି ।

ଏହାର ବିପରୀତ ମତବାଦଟି ହେଲା ଯେ ଏ ଜଗତ ସତ୍ୟ, ବାସ୍ତବ, ଇନ୍ଦ୍ରିୟାଧୀନ ଓ ଗୋଚରୀଭୂତ ଏବଂ ଏହା ହିଁ ସକଳ ସର୍ଜନା, ନିର୍ବ ତଥା ସମସ୍ତ ପ୍ରକାର ସାଂସାରିକ ଅସ୍ତିତ୍ୱର ମୂଳ କାରଣ । ଏପରି ଏକ ମତବାଦକୁ ଗ୍ରହଣ କରିନେଇଥିବା ଦାର୍ଶନିକମାନଙ୍କ ସିଦ୍ଧାନ୍ତଗୁଡ଼ିକୁ ବସ୍ତୁବାଦ, ପ୍ରକୃତିବାଦ, ଇନ୍ଦ୍ରିୟାନୁଭବବାଦ ତଥା ସମ୍ବେଦନବାଦ ନାମରେ ନାମିତ କରାଯାଇଛି । ପ୍ରଥମୋକ୍ତ ମତବାଦଟିର ଦାର୍ଶନିକମାନେ ଇନ୍ଦ୍ରିୟାତୀତ ତଥା ଲୋକାତୀତ ଜଗତକୁ ସତ୍ୟ ରୂପେ ଗ୍ରହଣ କରୁଥିଲା ବେଳେ, ଏମାନେ ତାର ବିପରୀତ ମତବାଦଟିକୁ ମାନିନେଇ ଆମର ଏହି ତେଲଲୁଣର ବାସ୍ତବ ଜଗତକୁ ସତ୍ୟ ବୋଲି କହୁଛନ୍ତି । ପ୍ରଥମ ମତବାଦଟିକୁ ଲୋକାତୀତ ଜଗତର ଦର୍ଶନ ବୋଲି ଅଭିହିତ କରାଯାଉଥିଲା ବେଳେ, ଦ୍ୱିତୀୟ ମତବାଦର ଦାର୍ଶନିକମାନେ ପ୍ରକୃତ ଦର୍ଶନକୁ ଏ ଜଗତର ଦର୍ଶନ ରୂପେ ନାମିତ କରି ଆସୁଛନ୍ତି । ଅଧ୍ୟାପକ ପ୍ରଜ୍ଞାମ ଡଉଇ ଦ୍ୱିତୀୟ ମତବାଦଟିର ପ୍ରବୋଧା, ପ୍ରଚାରକ ଏବଂ ପୃଷ୍ଠପୋଷକ ଅଟନ୍ତି । ଦର୍ଶନର ପ୍ରାକ୍‌କାଳରୁ ଏହିପରି ଏକ ଦ୍ୱନ୍ଦ୍ୱ ଗତାନୁଗତିକ ତଥା ପାରଂପାରିକ ଭାବରେ ଗଡ଼ି ଚାଲିଛି ।

ବିଶେଷ କରି ପୁରାତନ ବ୍ରିଟିଶୀୟ ଏବଂ ଜର୍ମାନୀୟ ବସ୍ତୁବାଦ ତଥା ଇନ୍ଦ୍ରିୟାନୁଭବବାଦ ସ୍ଥାନରେ ଆଜି ଆମେ ଆମେରିକୀୟ ଅର୍ଥକ୍ରିୟାବାଦ ଏବଂ ଇଉରୋପୀୟ ପ୍ରତ୍ୟକ୍ଷବାଦର ଅଶେଷ ଅଭ୍ୟୁଦୟ ଦେଖିବାକୁ ପାଉଁ । ଆଜି ଏହା ସର୍ବତ୍ର ମୁଣ୍ଡ ଟେକିଲାଣି । ଉକ୍ତ ଅର୍ଥ-କ୍ରିୟାବାଦ ଏବଂ ପ୍ରତ୍ୟକ୍ଷବାଦ ପ୍ରଧାନତଃ ବିଜ୍ଞାନସିଦ୍ଧ । ଏଗୁଡ଼ିକର ସର୍ବୋତ୍ତମ ପ୍ରଣାଳୀ ବୈଜ୍ଞାନିକ ପ୍ରଣାଳୀ ଅଟେ । ଉକ୍ତ ବୈଜ୍ଞାନିକ ପ୍ରଣାଳୀକୁ ଦାର୍ଶନିକ 'ଡିଉଇ' ଦର୍ଶନର ଉତ୍କୃଷ୍ଟ ଏବଂ ସର୍ବୋତ୍ତମ ପ୍ରଣାଳୀ ରୂପେ ସ୍ୱୀକୃତ ଦେଇଛନ୍ତି । ବାସ୍ତବିକ୍ ଏପରି ଏକ ଦାର୍ଶନିକ ପ୍ରଣାଳୀ ପ୍ରଚାର କରିବାରେ ତାଙ୍କର ଅତୁଳନୀୟ ଅବଦାନ ରହିଛି ।

ତର୍କ ଦୃଷ୍ଟିରୁ ଅର୍ଥକ୍ରିୟାବାଦ ଏବଂ ପ୍ରତ୍ୟକ୍ଷବାଦ ଅଭିନନ୍ଦନୀୟ ଏବଂ ପ୍ରଶଂସନୀୟ, କାରଣ ଏଗୁଡ଼ିକ ତର୍କ ଏବଂ ବିଜ୍ଞାନସିଦ୍ଧ ଅଟନ୍ତି । ଜଗତରେ ଆମେ ଯାହାକୁ ଅମୂର୍ତ୍ତ କିମ୍ବା ଭାବବାଚକ ପ୍ରତ୍ୟୟ ବୋଲି ଅଭିହିତ କରିଥାଉଁ, ସେଗୁଡ଼ିକ ମଧ୍ୟ ବିଜ୍ଞାନର ପ୍ରଣାଳୀ ଦ୍ୱାରା ଆମ ଆଗରେ ସହଜ ଏବଂ ସରଳ ଭାବରେ ମୂର୍ତ୍ତିମାନ୍ ବୋଧହୁଅନ୍ତି । ତେଣୁ ଜଗତର ପ୍ରତ୍ୟେକ ଘଟଣା ଏବଂ ବସ୍ତୁ ହେଉଛି ବିଜ୍ଞାନ ତଥା ଅନୁଭବର ସାମଗ୍ରୀ । ଅର୍ଥାତ୍ ଏହି ଜଗତର ପ୍ରତ୍ୟେକ ବସ୍ତୁ ଓ ସାମଗ୍ରୀ ଗୋଟିଏ ଗୋଟିଏ କାର୍ଯ୍ୟବୋଧୀ ଦତ୍ତସାମଗ୍ରୀ । ପ୍ରତ୍ୟକ୍ଷବାଦୀମାନେ କହନ୍ତି ଯେ ଦୈନନ୍ଦିନ ଜଗତର ପ୍ରତ୍ୟେକ ସାମଗ୍ରୀ ଅତି ଜଟିଳ ଅଟନ୍ତି; କିନ୍ତୁ ପ୍ରତ୍ୟକ୍ଷବାଦୀ ଏବଂ ଅର୍ଥକ୍ରିୟାବାଦୀମାନଙ୍କ ମଧ୍ୟରେ ଏତିକି ଫରକ ଯେ ଅର୍ଥକ୍ରିୟାବାଦୀ ଦାର୍ଶନିକମାନେ ଜଗତର ପ୍ରତ୍ୟେକ ସାମଗ୍ରୀକୁ ଜଟିଳତା ଦୃଷ୍ଟିରୁ ବିଚାର ନ କରି ତାକୁ ଏକ ସରଳ ଦତ୍ତସାମଗ୍ରୀ ରୂପେ ଦେଖନ୍ତି । ଜଗତର ପ୍ରତ୍ୟେକ ପଦାର୍ଥ ତଥା ସାମଗ୍ରୀର ଭିନ୍ନ ଗୁଣ ଅଛି (Quality) ବୋଲି କହି ଇନ୍ଦ୍ରିୟାନୁଭବବାଦୀ ତଥା ପ୍ରତ୍ୟକ୍ଷବାଦୀ ଦାର୍ଶନିକମାନେ ଲକ୍‌ଙ୍କ ଅମଳରୁ ପ୍ରତ୍ୟେକଂ ଦତ୍ତସାମଗ୍ରୀକୁ ଜଟିଳ କରିଦେଇଛନ୍ତି; କିନ୍ତୁ ଅଧ୍ୟାପକ ଡିଉଇ ଏତାଦୃଶ ଜଟିଳତାକୁ ପସନ୍ଦ କରି ନାହାନ୍ତି । ଡିଉଇଙ୍କ ମତରେ 'ନୀଳ' କିମ୍ବା 'ଉଷ୍ଣ' ବୋଲି କୌଣସି 'ଗୁଣ' ନାହିଁ, ବରଂ ସେଗୁଡ଼ିକକୁ 'ନୀଳ' କିମ୍ବା 'ଉଷ୍ଣ' 'ପଦାର୍ଥ' ବୋଲି କହିବା ସବୁଠାରୁ ଭଲ ହେବ । 'ଗୁଣ' କଥାଟି ଆରୋପ କରିବାରେ ନିହାତି 'ଭାବପ୍ରବଣତା' ରହିଛି ବୋଲି ଅଧ୍ୟାପକ ଡିଉଇ ଅଭିଯୋଗ କରିଛନ୍ତି । ତେଣୁ ତାଙ୍କ ମତରେ ସକଳ ନୈତିକ ପ୍ରତ୍ୟୟଗୁଡ଼ିକ ମଧ୍ୟ 'ଭାବପ୍ରବଣତା' ଉପରେ ପର୍ଯ୍ୟବସିତ ଅଟନ୍ତି । ଏପରି ଭାବପ୍ରବଣତାକୁ ସମ୍ପୂର୍ଣ୍ଣ ତ୍ୟାଗକରି ସକଳ ସାମଗ୍ରୀ ତଥା ପଦାର୍ଥଗୁଡ଼ିକୁ ଗୋଟିଏ ଗୋଟିଏ ପଦାର୍ଥ ବା ଦ୍ରବ୍ୟ ରୂପେ ବୁଝିବାକୁ ପଡ଼ିବ ବୋଲି ଦାର୍ଶନିକ ପ୍ରଜ୍ଞାନୀ ଡିଉଇ ଦୃଢ଼ ଯୁକ୍ତି ବାଢ଼ିଛନ୍ତି । ସେ କହନ୍ତି, ଯାହା ଆମେ ଅବ୍ୟବହିତ ଭାବରେ ଜାଣୁଛୁ, ତାହା ହିଁ ହେଉଛି ପ୍ରକୃତ ଜଗତ । ତେଣୁ ସେ ସମସ୍ତ ପ୍ରଜ୍ଞାତ୍ମକ ଅଭ୍ୟାସକୁ ଉପେକ୍ଷା କରିବାକୁ ମତ ଦେଇଛନ୍ତି । ତାଙ୍କ ମତରେ ପ୍ଲେଟୋଙ୍କ ପ୍ରତ୍ୟୟ ଏବଂ କ୍ୟାଣ୍ଟଙ୍କ ପ୍ରାଗ୍‌ଅନୁଭବିକ ତଥା ଅଗୋଚରୀୟ 'ଜଗତ ଏକ ପ୍ରଜ୍ଞାତ୍ମକ

ଅଭ୍ୟାସର କେବଳ ପରିଣାମ ମାତ୍ର । ଦାର୍ଶନିକ ଡିଉଇଙ୍କ 'Quest for certainty' ପୁସ୍ତକରେ କହିଛନ୍ତି ଯେ (1) "Water as an object of science,as H2 Q with all the other scientific propositions which can be made about it, is not a rival for position in real being with the water we see and use. It is because of experimental operations, an added instrumentality of multplied controls and uses of the real things of everyday experience.' ଏଥିରୁ ସ୍ପଷ୍ଟ ଅନୁମିତ ହେଉଛି ଯେ ଡିଉଇଙ୍କ ମତରେ ପ୍ରକୃତିର ଯେକୌଣସି ପଦାର୍ଥ ତଥା ସାମଗ୍ରୀକୁ ବୈଜ୍ଞାନିକ ପଦ୍ଧତିରେ ଦେଖିବା ଦ୍ୱାରା ପଦାର୍ଥଟିର ସ୍ୱରୂପରେ ଏବଂ ସତ୍ତାରେ ସେପରି କିଛି ପରିବର୍ତ୍ତନ ଘଟେ ନାହିଁ । ତେଣୁ ପ୍ରକୃତିର ସମଗ୍ର ବସ୍ତୁପରକ ସାମଗ୍ରୀ ତଥା ପଦାର୍ଥକୁ ସାଧାରଣ ଭାବେ ଜାଣିବା ହିଁ ସବୁଠାରୁ ଉତ୍ତମ ଉପାୟ । ସତ୍ୟ ଏବଂ ମିଥ୍ୟା ଏକ ପ୍ରଜ୍ଞାତ୍ମ-ବିଳାସ ମାତ୍ର । ଯାହା ଆମେ ଅବ୍ୟବହିତ ଅନୁଭୂତି ରୂପେ ସ୍ୱଚକ୍ଷୁରେ ଦେଖୁଛୁ, ତାକୁ ମାୟା ବା ମିଥ୍ୟା ବା ଭ୍ରମ କହି ଉଡ଼ାଇଦେଲେ ଚଳିବ ନାହିଁ । ତେଣୁ ସ୍ୱପ୍ନ ତଥା ଜଳରେ ମଗ୍ନରହିଥିବା ଯଷ୍ଟିଖଣ୍ଡିକର ଅନୁଭୂତିକୁ ମଧ୍ୟ ସତ୍ୟ ଏବଂ ବାସ୍ତବ ବୋଲି ଗ୍ରହଣ କରିନେବାକୁ ଡିଉଇ ଯୁକ୍ତି ବାଢ଼ିଛନ୍ତି । ଡିଉଇ ଜଗତର ଦ୍ୱୈତତାକୁ ସ୍ୱୀକାର କରିବାକୁ ରାଜି ନୁହନ୍ତି । ବସ୍ତୁନିଷ୍ଠ ଏବଂ ଆତ୍ମନିଷ୍ଠ ସକଳ ପ୍ରକାର ପଦାର୍ଥକୁ ସେ ଏକରୂପେ ଦେଖିବାକୁ ଉପଦେଶ ଦେଇଛନ୍ତି । କାରଣ ଯାହା ଆତ୍ମନିଷ୍ଠ ହୋଇପଡ଼େ, ତାହା କେବଳ ବସ୍ତୁନିଷ୍ଠ କୌଣସି ଅବସ୍ଥାର ବା ପରିବେଶର ଦୋଷ ଯୋଗୁ ଘଟିଥାଏ; କିନ୍ତୁ ଏହାପଛରେ କିଛି ତତ୍ତ୍ୱ ନ ଥାଏ (Metaphysics) । ସତ୍ୟ ଏବଂ ମିଥ୍ୟା, ବସ୍ତୁନିଷ୍ଠ ଏବଂ ଆତ୍ମନିଷ୍ଠ, ବହିର୍ଜଗତ ଏବଂ ଅନ୍ତର୍ଜଗତ ଇତ୍ୟାଦି ପଦାର୍ଥ ପଛରେ କୌଣସି ତତ୍ତ୍ୱ ବା ରହସ୍ୟ ନାହିଁ । ଏଥିରେ ଦ୍ୱୈତବାଦର ସ୍ଥାନ ନାହିଁ କି ପ୍ରାଗନୁଭବବାଦର ସ୍ଥାନ ନାହିଁ । ବରଂ ସତ୍ୟକୁ ଜାଣିବା ପାଇଁ ଏଥିରେ ଦୈନନ୍ଦିନ ଜୀବନର ବିଜ୍ଞାନ ସିଦ୍ଧ ତଥା ପ୍ରାଗ୍‌ବିଜ୍ଞାନ ସିଦ୍ଧ ଅନୁମାନ ପ୍ରଣାଳୀଗୁଡ଼ିକର ଉତ୍କର୍ଷ ଏବଂ ଉପାଦେୟତା ଯଥେଷ୍ଟ ରହିଛି ।

• ଅର୍ଥକ୍ରିୟାବାଦୀ ତଥା ପ୍ରତ୍ୟକ୍ଷବାଦୀ ତତ୍ତ୍ୱ ନିର୍ଣ୍ଣୟରେ ଦୁଇଟି ଦିଗ ରହିଛି । ଗୋଟିଏ ତତ୍ତ୍ୱ ନିର୍ଣ୍ଣୟର ତର୍କାତ୍ମକ ସ୍ୱରୂପ ଏବଂ ଅନ୍ୟଟି ହେଲା ତତ୍ତ୍ୱ ନିର୍ଣ୍ଣୟର ନୈତିକ ସ୍ୱରୂପ ତତ୍ତ୍ୱର ତର୍କାତ୍ମକ ସ୍ୱରୂପକୁ 'ଡିଉଇ' ବିଗ୍ରହ କରି କହନ୍ତି ଯେ ପ୍ରତ୍ୟେକ ବିଜ୍ଞାନ ସିଦ୍ଧ ତର୍କବାକ୍ୟଗୁଡ଼ିକୁ ପ୍ରେକ୍ଷଣିକ ତର୍କବାକ୍ୟ ସହିତ ସମତୁଲ ଅଟନ୍ତି । କାରଣ ଏତାଦୃଶ ପ୍ରେକ୍ଷଣିକ ତର୍କବାକ୍ୟଗୁଡ଼ିକରୁ ବିଜ୍ଞାନ ସିଦ୍ଧ ତର୍କବାକ୍ୟଗୁଡ଼ିକର ଉତ୍ପତ୍ତି ଘଟିଥାଏ ।

---

(1) Quest for certainty J. Dewey Page-106

ଏହି ଦୃଷ୍ଟିରୁ ଅର୍ଥକ୍ରିୟାବାଦୀ ଡୁଇଙ୍କ କୋଣରୁ ଏତିକ କୁହାଯାଇପାରେ ଯେ ସଂଶ୍ଳେଷାତ୍ମକ ତର୍କବାକ୍ୟଗୁଡ଼ିକ ବିଶ୍ଳେଷାତ୍ମକ ତର୍କବାକ୍ୟ ଅଟନ୍ତି, ଅର୍ଥାତ୍ ଏ ଦୁଇଟି ପରସ୍ପର ତର୍କୀୟ ସ୍ୱଭାବରେ ସମତୁଲ ଅଟନ୍ତି । ଉଦାହରଣ ସ୍ୱରୂପ ବିଦ୍ୟୁତ୍‌ଶକ୍ତିର ସୂଚନା ଆମେ ବିଦ୍ୟୁତ୍‌କଣାର ପ୍ରେକ୍ଷଣରୁ ଜାଣିପାରୁ । ଏହା ହିଁ ଅର୍ଥକ୍ରିୟାବାଦୀ ତଥା ପ୍ରେକ୍ଷଣବାଦୀମାନଙ୍କର ମୌଳିକ ନିୟମ । ଉକ୍ତ ନିୟମ ପଦାର୍ଥ ବିଜ୍ଞାନର ମଧ୍ୟ ମୂଳକଥା ଏବଂ ଏହି ନିୟମକୁ ସେମାନେ ସକ୍ରିୟବାଦ ନାମରେ ଅଭିହିତ କରିଛନ୍ତି । ଏହି ସିଦ୍ଧାନ୍ତକୁ ମଧ୍ୟ 'ନାମମାତ୍ରବାଦ'ରେ ପ୍ରୟୋଗ କରାଯାଇଛି । ଫଳରେ 'ସତ୍ୟାପନକର୍ତ୍ତା ଅର୍ଥ ସିଦ୍ଧାନ୍ତ'ର ଆଜି ସୃଷ୍ଟି ହୋଇଛି । ଗୋଟିଏ ତର୍କବାକ୍ୟ ସେତିକିବେଳେ ଅର୍ଥପୂର୍ଣ୍ଣ ହେବ, ଯେତେବେଳେ ତାହା ସତ୍ୟାପନୀୟ ବୋଲି ପରିଗଣିତ ହେବ । ଏହା ହିଁ ହେଉଛି ଦାର୍ଶନିକ ଡୁଇଙ୍କ ବୈଜ୍ଞାନିକ ପ୍ରତ୍ୟୟଗୁଡ଼ିକର ଅର୍ଥକ୍ରିୟାବାଦୀ ତଥା କାରଣବାଦୀ ତର୍କୀୟ ଭୂମିକା ଏବଂ ଅତ୍ୟାଧୁନିକ ତର୍କଶାସ୍ତ୍ର ଏବଂ ବୈଜ୍ଞାନିକ ଦର୍ଶନର ଶ୍ରେଷ୍ଠ ଲକ୍ଷଣ ।

'ସତ୍ୟାପନକର୍ତ୍ତା ଅର୍ଥ ସିଦ୍ଧାନ୍ତ'ରେ ତର୍କବାକ୍ୟଟି ନିଶ୍ଚିତ ଭାବେ ସତ୍ୟ କିମ୍ବା ମିଥ୍ୟା ହେବ ହିଁ ହେବ । ତଥାପି ଅଧ୍ୟାପକ ଡୁଇ ଜଣେ ଅନୁଭବବାଦୀ ଦାର୍ଶନିକ ହିସାବରେ ସତ୍ୟର ସମ୍ଭାବ୍ୟତାକୁ ଏଡ଼ି ଦେଇନାହାନ୍ତି । ବ୍ୟାବହାରିକ ଜଗତରେ ମନୁଷ୍ୟର ପ୍ରତ୍ୟେକ କାର୍ଯ୍ୟର ସତ୍ୟତା ସର୍ବଦା ସମ୍ଭାବ୍ୟ ଅଟନ୍ତି । ତାଙ୍କର ମତରେ **"(1) Judgments and belief regarding actions to be performed can never attain more than a precarious probability.**

ବର୍ତ୍ତମାନ ଦାର୍ଶନିକ ଡୁଇଙ୍କ ଦର୍ଶନରେ ବୈଜ୍ଞାନିକ ପ୍ରଣାଳୀ କଥାଟି ଆଲୋଚନା କରାଯାଉ । ସେ ଏହି ପ୍ରଣାଳୀଟିକୁ ବିଶେଷ ଭାବେ ବିଶ୍ଳେଷଣ ଏବଂ ଅନୁଶୀଳନ କରିଛନ୍ତି । ଡୁଇଙ୍କ ମତରେ ଆମେ ଯଦି 'ବିଜ୍ଞାନର ସତ୍ୟ' ଗୁଡ଼ିକକୁ ସର୍ବଦା ପରମ ସତ୍ୟ ରୂପେ ମାନି ନନେବୁ, ତାହାହେଲେ ବିଜ୍ଞାନର ସମସ୍ତ ପ୍ରତ୍ୟୟଗୁଡ଼ିକକୁ ବୁଝିବାକୁ ଆମ ପକ୍ଷରେ ଖୁବ୍ ସହଜ ଏବଂ ସରଳ ହେବ । କାରଣ ପ୍ରତ୍ୟେକ ପ୍ରକଳ୍ପଗୁଡ଼ିକର ସିଦ୍ଧତା ପାଇଁ ଆମକୁ ପ୍ରେକ୍ଷଣିକ ପ୍ରଣାଳୀ ଉପରେ ନିର୍ଭର କରିବାକୁ ପଡ଼ିବ ଏବଂ ପ୍ରତ୍ୟେକ ପ୍ରେକ୍ଷଣିକ ତଥା ପରୀକ୍ଷଣିକ ପ୍ରଣାଳୀଗୁଡ଼ିକ ମଧ୍ୟ ବାରମ୍ବାର ଅନୁସନ୍ଧାନ ଦ୍ୱାରା ସିଦ୍ଧ ହେବା ଉଚିତ । ଏହିପରି ଭାବେ ନବନବ ପ୍ରକଳ୍ପଗୁଡ଼ିକର ଉଦ୍ଭବ ଘଟିଥାଏ ଏବଂ ସେଗୁଡ଼ିକର ସିଦ୍ଧତା ପାଇଁ ପୁନଶ୍ଚ ଆମକୁ ଅବରୋହାନୁମାନ ତଥା ଆଗମନାତ୍ମକ ନିୟମାନୁସାରେ ପରୀକ୍ଷା କରିବାକୁ ପଡ଼ିଥାଏ । ଦାର୍ଶନିକ ଡୁଇ ସେଥିପାଇଁ କହନ୍ତି ଯେ ଅବରୋହାନୁମାନ ତଥା ଆଗମନାତ୍ମକ

(1) Quest for certainty J. Dewey—Page-6

ସମସ୍ୟାବଳୀର ସମାଧାନ ଯେତେବେଳେ ଯାଇ ସମ୍ଭବ ହେବ, ଯଦି ଆମେ ଅନାଗତ ଭାବେ ସର୍ବଦା ସେଗୁଡ଼ିକର ସନ୍ଧାନରେ ବ୍ରତୀ ହୋଇପାରୁ "The probems of Induction is soluble only on the ground of the continuity of inquiry." ଏଥିପାଇଁ ଅଧ୍ୟାପକ ପ୍ରଜ୍ଞାନୀ ଡିଉଇ କହନ୍ତି ସତ୍ୟ ହେଉଛି ଏକ (1) (Warranted assutibility) ଏବଂ ଜ୍ଞାନ ଲୋକର ମତାମତରୁ ସୃଷ୍ଟି ହୋଇଥାଏ (2) (True knowledge begins with opinion) ଅବଶେଷରେ ଏତିକି କୁହାଯାଇପାରେ ଯେ ଜଗତର ଏକ ସାମାନ୍ୟ ଘଟଣାର କାରଣ ଖୋଜିବାକୁ ଗଲେ ଆମକୁ ତର୍କାନୁମୋଦିତ ଏକ ଆବେଗ୍ରହାବରୋହାନୁମାନ ବୈଜ୍ଞାନିକ ପଦ୍ଧତିକୁ ଗ୍ରହଣ କରିନେବାକୁ ପଡ଼ିବ । ତେଣୁ ତାଙ୍କର ବୈଜ୍ଞାନିକ ପ୍ରଣାଳୀକୁ ପ୍ରାକଳ୍ପିକ-ଅବରୋହାନୁମାନ ପ୍ରଣାଳୀ ବୋଲି କହିଲେ ଠିକ୍ ହେବ ।

---

*(1) Quest for Certainty Dewey—Page-7
(2) Experience & Nature—Page-155

## ନବମ ପରିଚ୍ଛେଦ

# "ଡିଉଇଙ୍କ ସୌନ୍ଦର୍ଯ୍ୟବାଦ"

ଦାର୍ଶନିକ ଡିଉଇଙ୍କର ସୌନ୍ଦର୍ଯ୍ୟତତ୍ତ୍ୱ ମୂଳତଃ ଅର୍ଥକ୍ରିୟାବାଦୀ ହେବାକୁ ବାଧ୍ୟ ବୋଲି ଆଶାପୋଷଣ କରିବା ହୁଏତ ଖୁବ୍ ସ୍ୱାଭାବିକ୍ ; କିନ୍ତୁ ଡିଉଇଙ୍କର ସୌନ୍ଦର୍ଯ୍ୟତତ୍ତ୍ୱକୁ ଗଭୀରଭାବେ ଅନୁଧ୍ୟାନ କଲେ ଏହା ସ୍ପଷ୍ଟଭାବେ ପ୍ରତୀୟମାନ ହେବ ଯେ, ଏଥିରେ ନିଶ୍ଚିତ ଭାବେ କିଛି ବ୍ୟତିକ୍ରମ ଘଟିଛି । ଡିଉଇ ଶେଷଆଡ଼କୁ ହେଗେଲୀୟାନ ଶୈଳୀରେ ସ୍ୱୀୟ ସୌନ୍ଦର୍ଯ୍ୟ ତତ୍ତ୍ୱକୁ ବ୍ୟାଖ୍ୟାନ କଲାଭଳି କେଜାଣି କାହିଁକି ଉଦ୍ୟମ କରିଛନ୍ତି ବୋଲି ମନେ ହୁଏ । ଅବଶ୍ୟ ସେ ହେଗେଲୀୟାନକ୍ରମ ଦ୍ୱାରା ପ୍ରଥମରୁ କେତେକାଂଶରେ ପ୍ରଭାବିତ ହୋଇଥିଲେ ମଧ୍ୟ, ସର୍ବତ୍ର ସ୍ୱୀୟ ଅର୍ଥକ୍ରିୟାବାଦୀ ସାଧନବାଦକୁ ସମ୍ପୂର୍ଣ୍ଣଭାବେ ଗ୍ରହଣ କରିନେଇ ନିଜର ଦାର୍ଶନିକ ମତବାଦର ପ୍ରଚାର କରିଛନ୍ତି ।

ପ୍ରକୃତରେ ଡିଉଇଙ୍କର ସୌନ୍ଦର୍ଯ୍ୟବାଦର ସ୍ୱାକ୍ଷର କେବଳ ଦେଖିବାକୁ ମିଳେ ତାଙ୍କ ଦ୍ୱାରା ୧୯୩୪ ମସିହାରେ ରଚିତ "କଳା ଏବଂ ଅନୁଭୂତି"—ପୁସ୍ତକରେ କଳା ଏବଂ ସୌନ୍ଦର୍ଯ୍ୟ ତତ୍ତ୍ୱକୁ ବିଶ୍ଳେଷଣ କରିବାର ଦୁଇଟି ପ୍ରଧାନ ଦିଗ ରହିଛି । ସେଥିରୁ ଗୋଟିଏ ହେଲା 'ଅର୍ଥକ୍ରିୟାବାଦୀ' ଦିଗ ଏବଂ ଅନ୍ୟଟି ହେଲା 'ଅଙ୍ଗୀରୂପ' ଦିଗ ଅର୍ଥାତ୍ କଳାର ସାର୍ବଜନୀନ ଦିଗ ; କିନ୍ତୁ ଅଧ୍ୟାପକ ଡିଉଇଙ୍କ ସୌନ୍ଦର୍ଯ୍ୟ ବିଜ୍ଞାନ ଅର୍ଥକ୍ରିୟାବାଦୀର ରୂପ ନନେଇ ପ୍ରଧାନତଃ ଅଙ୍ଗୀରୂପ ସାକଲ୍ୟାତ୍ମକ ହୋଇ ପଡ଼ିଛି । ଏତଦ୍‌ବ୍ୟତୀତ ବହୁକ୍ଷେତ୍ରରେ ଏ ଦୁଇଟି ଦିଗର ମଧ୍ୟ ସଙ୍ଗଠନ ତଥା ସମ୍ମିଶ୍ରଣ ଦେଖିବାକୁ ମିଳେ । ଏପରି ବ୍ୟତିକ୍ରମ ଯେ କାହିଁକି ଘଟିଛି ତାହା ସେ ନିଜେ ବୋଧହୁଏ ଜାଣନ୍ତି । କେତେକଙ୍କ ମତରେ ଅର୍ଥକ୍ରିୟାବାଦୀ ସୌନ୍ଦର୍ଯ୍ୟ ତତ୍ତ୍ୱ ସର୍ବଦା ସାର୍ବଜନୀନ ହୋଇ ନପାରେ । ଅର୍ଥାତ୍ ଏ ଦୁଇଟିର ସୁସମନ୍ୱୟ ଅସମ୍ଭବ । (1) **"An organic esthetics can not be harmonisedwith programatic esthetics"** ପରସ୍ପର ବିରୁଦ୍ଧ ତତ୍ତ୍ୱ

---

(1) Questions on Dewey's esthetics—by S. C. Pepper—Page-372—Phil of J. Dewey.

ଦୁଇଟିର ସମ୍ମିଶ୍ରଣ ଫଳରେ ଅଧ୍ୟାପକ ରିଡ୍‌ଙ୍କର ନିଜସ୍ୱ ଷ୍ଟାଇଲ୍ ହୋଇପାରେ ମନେ ହୁଏ । ଅଙ୍ଗୀରୂପ (Organic) ତଥା ସାର୍ବଜନୀନ ସୌନ୍ଦର୍ଯ୍ୟ ତତ୍ତ୍ୱର ସ୍ୱରୂପ ଏବଂ ଲକ୍ଷଣ ରିଡ୍‌ଙ୍କର "କଳା ଏବଂ ଅନୁଭୂତି" ପୁସ୍ତକରେ ସର୍ବତ୍ର ଦେଖିବାକୁ ମିଳେ । ଏତଦ୍‌ଭିନ୍ନ ତାଙ୍କର ଅର୍ଥକ୍ରିୟାବାଦୀ ସୌନ୍ଦର୍ଯ୍ୟ ତତ୍ତ୍ୱର ସ୍ୱରୂପ ଏବଂ ଲକ୍ଷଣ ମଧ୍ୟ ଉକ୍ତ ପୁସ୍ତକର ପ୍ରତ୍ୟେକ ଦଶ ପୃଷ୍ଠାରେ କୌଣସି ନା କୌଣସି ସ୍ଥାନରେ ପରିଦୃଷ୍ଟ ହୋଇଥାଏ ।

ଅଙ୍ଗୀରୂପ ତଥା ସାର୍ବଜନୀନ ସୌନ୍ଦର୍ଯ୍ୟ ତତ୍ତ୍ୱର ସ୍ୱରୂପ ଏବଂ ଲକ୍ଷଣଗୁଡ଼ିକ ନିମ୍ନମତେ ସ୍ଥିର କରାଯାଇ ପାରେ—ପ୍ରଥମତଃ ଏହା ସାର୍ବଜନୀନ ଅଟେ । ଦ୍ୱିତୀୟତଃ ଏହାର ମୂଲ୍ୟବୋଧ ସାର୍ବଜନୀନତା ତଥା ଅଙ୍ଗୀରୂପ ସାକଲ୍ୟ ସହିତ ଅଙ୍ଗାଙ୍ଗୀ ଭାବେ ବିଜଡ଼ିତ । ତୃତୀୟତଃ ଏହାର ସୌନ୍ଦର୍ଯ୍ୟାନୁଭୂତି ସର୍ବଦା ଚିରନ୍ତନ । ଚତୁର୍ଥତଃ ଏହାର ସୃଜନଶୀଳତା ସର୍ବଦା ସାର୍ବିକତା ସାପେକ୍ଷ ଏବଂ ପଞ୍ଚମତଃ ଯେ କୌଣସି ଏକ ବ୍ୟକ୍ତିଗତ ସୌନ୍ଦର୍ଯ୍ୟବୋଧ ମଧ୍ୟ ସାର୍ବଜନୀନ ହେବାର ଯୋଗ୍ୟତା ତଥା ସ୍ୱାକ୍ଷର ବହନ କରିଥାଏ ।

କିନ୍ତୁ ଅର୍ଥକ୍ରିୟାବାଦୀ ସୌନ୍ଦର୍ଯ୍ୟ ତତ୍ତ୍ୱର ସ୍ୱରୂପ ଓ ଲକ୍ଷଣଗୁଡ଼ିକ ହେଲା ; ପ୍ରଥମତଃ ଏହା ଯେ କୌଣସି ବ୍ୟକ୍ତିର ସୌନ୍ଦର୍ଯ୍ୟବୋଧ ତାହାର ପାରିପାର୍ଶ୍ୱିକ ପରିସ୍ଥିତିର ଅନ୍ୟୋନ୍ୟ ପ୍ରକ୍ରିୟା ଉପରେ ପୂର୍ଣ୍ଣତଃ ନିର୍ଭରଶୀଳ । ଦ୍ୱିତୀୟତଃ ବ୍ୟକ୍ତିର ପ୍ରତ୍ୟେକ ସୌନ୍ଦର୍ଯ୍ୟାନୁଭୂତି ଅନ୍ୟ ଏକ ଅନୁଭୂତିର ପ୍ରଭାବକୁ ଅପେକ୍ଷା ରଖିଥାଏ । ତୃତୀୟତଃ ବ୍ୟକ୍ତିର ସୌନ୍ଦର୍ଯ୍ୟାନୁଭୂତିର ଗୁଣାତ୍ମକ ତାରତମ୍ୟ ମଧ୍ୟ ପରିଲକ୍ଷିତ ହୋଇଥାଏ । ଚତୁର୍ଥତଃ ପ୍ରତ୍ୟେକ ସୌନ୍ଦର୍ଯ୍ୟାନୁଭୂତିର ମୂଲ୍ୟବୋଧ ତାର ସାର୍ବିକତା, ଗମ୍ଭୀରତା ଏବଂ ସ୍ପଷ୍ଟତା ଉପରେ ନିର୍ଭରଶୀଳ ଅଟେ । ପଞ୍ଚମତଃ ଦ୍ୱନ୍ଦ୍ୱ ଏବଂ ସଙ୍ଗଠନର ଲକ୍ଷଣ ମଧ୍ୟ ଏତାଦୃଶ ସୌନ୍ଦର୍ଯ୍ୟାନୁଭୂତିରେ ଦେଖିବାକୁ ମିଳେ ଏବଂ ଶେଷତଃ କଳାର କାର୍ଯ୍ୟ ତଥା ସୌନ୍ଦର୍ଯ୍ୟାନୁଭୂତି କଳା ସୃଷ୍ଟିରେ ଏକ ଅବଲମ୍ବିତ ଉପାୟ ଓ ସହାୟକ ରୂପେ କାର୍ଯ୍ୟ କରିଥାଏ । ସର୍ବୋପରି ଏତିକି କୁହାଯାଇ ପାରେ ଯେ ଜଣେ ଅଙ୍ଗୀରୂପୀ କଳାକାର ସଂସାରକୁ ଏକ ଅଙ୍ଗୀରୂପ ସାକଲ୍ୟ ଭାବରେ ଦେଖିଲାବେଳେ ଜଣେ ଅର୍ଥକ୍ରିୟାବାଦୀ କଳାକାର ସଂସାରକୁ ଏକ ଐତିହାସିକ ଏବଂ ଅନୁକ୍ରମିକ ବର୍ଦ୍ଧିତ ଅନୁଭୂତିର ପରିଣାମ ରୂପେ ବିଚାର କରେ । ଦ୍ୱିତୀୟତଃ ଜଣେ ସାର୍ବଜନୀନ ଅଙ୍ଗୀରୂପୀ ଏବଂ ଆଦର୍ଶବାଦୀ କଳାକାର କଳା ମାଧ୍ୟମରେ ଏକ ସାର୍ବଜନୀନ ଏବଂ ଚିରନ୍ତନ ଏକତା ଉପଲବ୍ଧି କରୁଥିଲାବେଳେ, ଜଣେ ଅର୍ଥକ୍ରିୟାବାଦୀ କଳାକାର କଳାକୃତିରେ ଏକ ଅସମନ୍ୱିତ ଅନେକତାକୁ ଅନୁଭବ କରୁଥାଏ । କାରଣ ସେ ପ୍ରତ୍ୟେକ ଅନୁଭୂତି ଏବଂ ପରିସ୍ଥିତିର ଉପରେ ଏପରି ବିଚାର ତଥା ଅନୁଭବ କରିବାକୁ ବାଧ୍ୟ ହେଉଥାଏ । ତେଣୁ ଅର୍ଥକ୍ରିୟାବାଦୀ କଳାକାରଙ୍କ ପକ୍ଷରେ କଳାର ଚିରନ୍ତନ ତଥା ସାର୍ବଜନୀନ ମୂଲ୍ୟବୋଧ ନିହାତି ଏକ ଗୌଣ କଥା ।

ଅତଏବ ଉପରୋକ୍ତ ଦୃଷ୍ଟିକୋଣରୁ ବିଗ୍ଭରକଲେ ଏତିକି ସ୍ପଷ୍ଟଭାବେ ଅନୁମିତ ହେବ ଯେ ଆଦର୍ଶବାଦୀ କଳା ଓ ଅର୍ଥକ୍ରିୟାବାଦୀ ତଥା ବସ୍ତୁବାଦୀ କଳା ପରସ୍ପର ବିରୁଦ୍ଧ ଅଟନ୍ତି ; କିନ୍ତୁ ଏ ଦୁଇଟି ମତବାଦର ସମ୍ମିଶ୍ରଣ ତଥା ସଲଗ୍ନ ଡିଉଇଙ୍କର କଳାତତ୍ତ୍ୱ ତଥା ସୌନ୍ଦର୍ଯ୍ୟବାଦର ଆଲୋଚନା ଅବକାଶରେ ଦେଖିବାକୁ ମିଳେ । ଏହାବ୍ୟତୀତ ଅଙ୍ଗୀରୂପ ତଥା ଆଦର୍ଶବାଦୀ କଳାର ସ୍ୱରୂପ ଏବଂ ଲକ୍ଷଣ ଆମେ ଡିଉଇଙ୍କର 'କଳା ଏବଂ ଅନୁଭୂତି' ଶୀର୍ଷକ ପୁସ୍ତକର ଛତ୍ରେ ଛତ୍ରେ ଦେଖିବାକୁ ପାଇବା ।

ଉକ୍ତ ପୁସ୍ତକରେ ଅଧ୍ୟାପକ ଡିଉଇ କହିଛନ୍ତି "Beauty is the consumated movement of feelings and their qualities integrated through their inner relations into a single individual whole." ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ସୌନ୍ଦର୍ଯ୍ୟବୋଧ ଏକ ସାମୂହିକ । ସାର୍ବିକ ଏବଂ ସାର୍ବଜନୀନ ଚରନ୍ତନ ଅଙ୍ଗୀରୂପ ସାକଲ୍ୟାତ୍ମକ ଅନୁଭୂତି ମାତ୍ର । 'କଳା ଏବଂ ଅନୁଭୂତି' ପୁସ୍ତକରେ ଶେଷ ଅଧ୍ୟାୟରେ ଡିଉଇ ଲେଖିଛନ୍ତି ଯେ, "ଯେଉଁସବୁ ଉପାଦାନଗୁଡ଼ିକୁ ନେଇ ଆମେ କଳା ସୃଷ୍ଟିକରୁ ସେସବୁ ଉପାଦାନଗୁଡ଼ିକ ବହିର୍ଜଗତରୁ ଗୃହୀତ ଏବଂ ଆନୀତ । ସେଗୁଡ଼ିକ କଦାପି କଳାକାରର ବା ଶିଳ୍ପୀର ମାନସିକ ଉପାଦାନ ନୁହନ୍ତି । ପ୍ରତ୍ୟେକ କଳା ସୃଷ୍ଟିରେ ଶିଳ୍ପୀ ତଥା କଳାକାରର ଆତ୍ମପ୍ରକାଶର ଅବକାଶ ଥାଏ । କାରଣ କଳାକାର ବହିର୍ଜଗତରୁ ଉପାଦାନଗୁଡ଼ିକୁ ନେଇ କଳା ସୃଷ୍ଟି କରିଥିଲେ ମଧ୍ୟ ସେଥିରେ ତାହାର ନିଜସ୍ୱ କିଛି ଥାଏ । ତେଣୁ କଳା ମାଧ୍ୟମରେ କଳାକାର ତଥା ଶିଳ୍ପୀ ବହିର୍ଜଗତରୁ ଆନୀତ ଉପାଦାନଗୁଡ଼ିକ ଦୁନିଆ ଆଗରେ ଏକ ନୂତନ ରୂପରେ ଉପସ୍ଥାପିତ କରିଥାନ୍ତି । ଏହିଠାରେ କଳା ଆଉ ବ୍ୟକ୍ତିଗତ ନ ହୋଇ ସାର୍ବଜନୀନ ହୋଇପଡ଼ିଥାଏ । (Art and Experience—107-8)" । ଏହା ହିଁ ଡିଉଇଙ୍କ ମତରେ ଅଙ୍ଗୀରୂପ ସୌନ୍ଦର୍ଯ୍ୟବାଦର ପ୍ରକୃଷ୍ଟ ଲକ୍ଷଣ ଓ ସ୍ୱରୂପ ଅଟେ । ଅନ୍ୟତ୍ର ଡିଉଇ ମଧ୍ୟ କହିଛନ୍ତି ଯେ କଳା ସୃଜନରେ ବହୁ କ୍ଷେତ୍ରରେ ବହିର୍ଜଗତର ବାସ୍ତବ ଉପାଦାନ ଏବଂ ମାନସିକ ଜଗତର କାଳ୍ପନିକ ଉପାଦାନଗୁଡ଼ିକ ମଧ୍ୟରେ ଦ୍ୱନ୍ଦ୍ୱ ସୃଷ୍ଟି ହେଉଥିଲେ ହେଁ, ତାହା କଳାକାରର ବ୍ୟକ୍ତିତ୍ୱ ତଥା ମାନସିକ ପ୍ରବୃତ୍ତି ବଳରେ ଏକତ୍ରିତ ହୋଇ ଏକ ସମନ୍ୱିତ କଳାକୃତିର ରୂପ ନିଅନ୍ତି । ଏପରି କ୍ଷେତ୍ରରେ କଳାକାରର ଅନ୍ତର୍ନିହିତ ଦୃଷ୍ଟିଭଙ୍ଗୀ ବହିର୍ଗତ ଦୃଷ୍ଟିଭଙ୍ଗୀକୁ ସଂଯତ କରି କଳାକୃତିର ଉତ୍କର୍ଷ ସାଧନ କରିଥାଏ । * (1) "It remains as the organ by which outer vision is controlled and it takes on structure as the latter is absorbed within it."

---

(1) Art and Experience—Page-268

ବାସ୍ତବିକ୍ ସମାଲୋଚନା ଦୃଷ୍ଟିରୁ ଦେଖିଲେ ମଧ୍ୟ ଏହା ସ୍ପଷ୍ଟଭାବେ ସୂଚିତ ହେବ ଯେ କଳାର ସମାଲୋଚନା ଉପରେ ଡଉଇ ଗୁରୁତ୍ୱ ଆରୋପ କରିନାହାନ୍ତି । ତାଙ୍କ ମତରେ "କଳାହିଁ କଳା" ; ତେଣୁ ସେ କହନ୍ତି ଅର୍ଥକ୍ରିୟାବାଦୀ କଳା ଦୃଷ୍ଟିରୁ ଦେଖିଲେ କଳାକୃତିରେ ସମସ୍ୟା, ପରିସ୍ଥିତି, ପରିବେଶ ତଥା ଭିନ୍ନ ଭିନ୍ନ ଅନୁଭୂତିର ପରଶ ମିଳିଥାଏ । ତଥାପି ସେ ସମସ୍ତ କଳାକୃତିରେ ଏକାକାର ହୋଇଯାଇ ଏକ ଅଙ୍ଗୀରୂପ କଳାରେ ପରିଣତ ହୋଇଯାଇଥାନ୍ତି । * (2) "A work of Art may certainly convey the essence of multitude of experiences, and sometimes in a remarkably condensed and striking way." ଏପରି କି କଳା ସୃଷ୍ଟିରେ ଯାହା ଦୁଃଖାନ୍ତ ଏବଂ ଅସୁନ୍ଦର ତାହା ଦୁଃଖାନ୍ତ ଏବଂ ଅସୁନ୍ଦର ହୋଇ ନ ରହି କଳାକୃତିରେ ସାର୍ବିକ ସୌନ୍ଦର୍ଯ୍ୟ ମଧ୍ୟରେ ଲୀନ ହୋଇଯାଇ ନିଜର ସତ୍ତା ହରାଇବସନ୍ତି ; ତେଣୁ ଡଉଇଙ୍କ ମତରେ କଳାସୃଜନରେ ଦୁଃଖାନ୍ତ ଏବଂ ଅସୁନ୍ଦର ବୋଲି କିଛି ନାହିଁ । * (3) The peculiar power of tragedy to leave us at the end, with a ense of reconciliation ···Shakespeari's employing the connic in the midst of tragedy···The explanation of the fact that things ugly in themselves may contribute to the esthetic effect of a whole is doubtless after due to the fact that they are so used as to contribute to individualisation of parts within a whole."

---

(2 Art and Experience – Page-293
(3) Do —Page-96--and-204

## ଦଶମ ପରିଚ୍ଛେଦ

# ଡିଉଇଙ୍କ ମନସ୍ତତ୍ତ୍ୱ

ଯେତେବେଳେ ନୂତନ ତଥା ବୈଜ୍ଞାନିକ ମନୋବିଜ୍ଞାନର ଅଭ୍ୟୁଦୟ ଘଟୁଥାଏ, ଠିକ୍ ସେତିକିବେଳେ ଡିଉଇଙ୍କର ଜନ୍ମ । ୧୮୮୯ ମସିହାରୁ ମନସ୍ତତ୍ତ୍ୱରୁ ବିଜ୍ଞାନାଗାର ସ୍ଥାପିତ ହେବାର ପ୍ରାୟ ତିନିବର୍ଷ ପରେ, ଅଧ୍ୟାପକ ଡିଉଇ ମନୋବିଜ୍ଞାନ ଉପରେ ଲେଖାଲେଖି ଆରମ୍ଭ କରିଥାନ୍ତି ; କିନ୍ତୁ ଡିଉଇଙ୍କର ରଚନାବଳୀ ପ୍ରଧାନତଃ ଦର୍ଶନଧର୍ମୀ ରଚନାବଳୀ ଅଟେ । ତେଣୁ ଡିଉଇଙ୍କର ମନସ୍ତତ୍ତ୍ୱକୁ ତାଙ୍କର ଦାର୍ଶନିକ ରଚନାବଳୀର ପରିସର ମଧ୍ୟରୁ ବିଚ୍ଛିନ୍ନ କରିନେବା ଏକ ଦୁରୁହ ବ୍ୟାପାର । ନିଜେ ଡିଉଇ ମଧ୍ୟ ତାଙ୍କ ମନସ୍ତାତ୍ତ୍ୱିକ ରଚନାବଳୀ ଗୁଡ଼ିକୁ ଗୌଣସ୍ଥାନ ଦେଇଛନ୍ତି । ସେ କେବଳ ମନୁଷ୍ୟର ଅନୁଭୂତି ଏବଂ ଚରିତ୍ରର ମାନ ନିର୍ଣ୍ଣୟ କରିବାପାଇଁ ଏକ ମନ ସ୍ତାତ୍ତ୍ୱିକ ଭିତ୍ତିଭୂମିର ଅନ୍ୱେଷଣ ଏବଂ ଅନୁଶୀଳନ କରିଛନ୍ତି । ସେ ଯେତେବେଳେ ପ୍ରାୟ ୨୫ ବର୍ଷ ବୟସରେ ପଦାର୍ପଣ କରନ୍ତି, ସେତେବେଳେ "Audover Review" ପତ୍ରିକାରେ ପ୍ରୋକ୍ତ ଅନୁଭୂତିର ଏକ ଦାର୍ଶନିକ ପୃଷ୍ଠଭୂମି ସମ୍ବନ୍ଧରେ ଆଲୋଚନା କରିବା ଅବସରରେ ସେ ଏକ ପ୍ରକାର ନୂତନ ମନୋବିଜ୍ଞାନ ସୃଷ୍ଟି କରିଛନ୍ତି ।

ଅନୁଭୂତି ବହିର୍ଜଗତର କେବଳ ସଂବେଦନ ସର୍ବସ୍ୱ ନୁହେଁ ବୋଲି ଡିଉଇ କହି ପ୍ରତ୍ୟେକ ଅନୁଭବବାଦୀ ମନତତ୍ତ୍ୱବିତ୍‌ଙ୍କର ପୂର୍ବ ମତାମତକୁ ଖଣ୍ଡନ କରିଛନ୍ତି । ଡିଉଇଙ୍କ ମତରେ ସଂବେଦନ ଚେତନାର ପୂର୍ବଗ ନୁହେଁ ବରଂ ଏହା ଚେତନାର ଅନୁଗ ଅଟେ । ଫଳରେ ସଂବେଦନ ଅନୁଭୂତି ଉପରେ ସମ୍ପୂର୍ଣ୍ଣ ନିର୍ଭରଶୀଳ ଅଟେ । ଡିଉଇ କହନ୍ତି— ଅନୁଭୂତି ହିଁ ଉଦ୍ଦେଶ୍ୟ ଏବଂ ବିଧେୟ ତଥା ବିଷୟିନିଷ୍ଠ ଏବଂ ବିଷୟନିଷ୍ଠ ସମସ୍ତ ପ୍ରକାର ଚେତନାର ଏକ ସଂଗଠନ । ମନସ୍ତତ୍ତ୍ୱ ବିଷୟ ନିଷ୍ଠତାକୁ ପରିତ୍ୟାଗ କରି କେବେହେଲେ ବିଷୟିନିଷ୍ଠ ହୋଇ ନପାରେ । କେବଳ ମନସ୍ତତ୍ତ୍ୱର କାର୍ଯ୍ୟ ହେଉଛି ବିଷୟିନିଷ୍ଠତା ଏବଂ ବିଷୟନିଷ୍ଠତା ମଧ୍ୟରେ ଏକ ସମନ୍ୱିତ ସମ୍ପର୍କ ଖୋଜି ବାହାର କରିବା । ମନସ୍ତତ୍ତ୍ୱ କ୍ଷେତ୍ରରେ ମଧ୍ୟ ଡିଉଇ ହେଗେଲପନ୍ଥୀ ଥିଲେ । ତେଣୁ ହଲ୍‌ଡେନ୍ ଡିଉଇଙ୍କ ମନସ୍ତତ୍ତ୍ୱକୁ ସମାଲୋଚନା କରି କହିଛନ୍ତି ଯେ ଡିଉଇଙ୍କ ମନସ୍ତତ୍ତ୍ୱ 'ଏକା ଧାରରେ ମାନବିକ ଏବଂ ପରମାର୍ଥିକ' ଅଟେ । ଡିଉଇଙ୍କ ଦ୍ୱାରା ୧୮୮୬ରେ ରଚିତ । **Text book of Psychology** ରେ ଉକ୍ତ ଦୁଇଟି ଦିଗର ସମାହାର ଦେଖିବାକୁ ମିଳେ । ଉପରୋକ୍ତ ପୁସ୍ତକରେ ସେ ବୁଦ୍ଧିବାଦୀ

ମନସ୍ତତ୍ତ୍ୱ ଏବଂ ସଂବେଦନବାଦୀ ମନସ୍ତତ୍ତ୍ୱର ଏକ ସୁସମନ୍ୱିତ ଆଲୋଚନା କରିଛନ୍ତି । ଏଥିପାଇଁ ଯଥାର୍ଥଭାବେ ବ୍ରେଟ୍ ସାହେବ କହିଛନ୍ତି ଯେ, (1) The first gray down of that tomorrow for which the Psychology of American colleges was waiting" କିନ୍ତୁ ଡଉଇଙ୍କ ମତରେ ମନ (Soul) ହିଁ ସମସ୍ତ ପ୍ରକାର ସମନ୍ୱୟର ମୂଳକାରଣ ଏବଂ ମୂଳାଧାର । ମନର କାର୍ଯ୍ୟ ହେଉଛି । (2) The activity of Synthesis upon sense"—

ମନସ୍ତତ୍ତ୍ୱ ସମ୍ବନ୍ଧରେ ଡ଼ଉଇଙ୍କର ପ୍ରଥମରୁ ଯେଉଁସବୁ ଧାରଣାଥିଲା, ତାହା ପ୍ରାୟ ଜେମ୍‌ସଙ୍କ ପ୍ରଭାବ ଫଳରେ ଧୀରେ ଧୀରେ ପରିବର୍ତ୍ତିତ ହେବାକୁ ଲାଗିଲା । ଜେମ୍‌ସଙ୍କ ମନସ୍ତତ୍ତ୍ୱରେ ଅଗୋଚରୀୟ ମନସ୍ତତ୍ତ୍ୱ ବଦଳରେ କାର୍ଯ୍ୟପରକ ମନସ୍ତତ୍ତ୍ୱର ସୂଚନା ମିଳୁଥାଏ ; କିନ୍ତୁ ଅଧ୍ୟାପକ ଡଉଇ ଜେମ୍‌ସଙ୍କର ଅନ୍ଧ ସମର୍ଥକ ନଥିଲେ । 'ଜେମ୍‌ସଲାଂଜ ଭାବପ୍ରବଣତା ସିଦ୍ଧାନ୍ତ' ପ୍ରତି ଡଉଇଙ୍କର ଦୃଷ୍ଟି ଆକର୍ଷିତ ହୋଇଥାଏ । ଡାରଉନ୍ ଏବଂ ଜେମ୍‌ସଲାଂଜଙ୍କ ସିଦ୍ଧାନ୍ତ ଦୁଇଟି ମଧ୍ୟରେ ଡ଼ଉଇ ଏକ ବିରୋଧ (Contradiction) ଦେଖନ୍ତି । ସେ କହନ୍ତି ଯେ ଜୀବର ସ୍ୱାର୍ଥ ଓ ଉତ୍ସାହ ହିଁ ଭାବପ୍ରବଣତାର ମୂଳକଥା । ତେଣୁ 'Interest is the antethesis of emotional seizeur, existing only when an adjustment is well co-ordinated, when conflict and hence emotion are virtually absent" (Psycho logical review—18‌94) ଡଉଇଙ୍କ ମନରେ ବ୍ୟକ୍ତି ଏବଂ ତାର ସବୁ ପ୍ରକାର ମାନସିକ ପ୍ରକ୍ରିୟା ଏକ ଅଟନ୍ତି । ତେଣୁ ବ୍ୟକ୍ତିର ମନୋବୃତ୍ତି, ଅଭ୍ୟାସ, ଇଚ୍ଛା, ପ୍ରତ୍ୟୟ ତଥା ଅଜ୍ଞତା ପଛରେ ତାର କିଛି ଅହଂ ନଥାଏ । ଡଉଇ ମଧ୍ୟ ବାଲଡଉନ୍‌ଙ୍କ Effort ବା ପ୍ରଚେଷ୍ଟା ସିଦ୍ଧାନ୍ତକୁ ଅନୁରୂପମତେ ଖଣ୍ଡନ କରିଛନ୍ତି । "Effort is not, as Baldwin says consciousness of opposition between what we call self and muscular resistance" କାରଣ ଡ଼ଉଇଙ୍କ ମତରେ ଅହଂ ତଥା ପ୍ରେକ୍ଷୀୟ ପ୍ରତିକ୍ରିୟା ମଧ୍ୟରେ କିଛି ତାରତମ୍ୟ ନଥାଏ । ନୂତନ ପରିସ୍ଥିତିକୁ ସମାୟୁକ୍ତ କରିବା ପାଇଁ ଆମର ପୁରାତନ ଅଭ୍ୟାସକୁ ତଦନୁରୂପେ ପରିଭ୍ରୂକୃତ କରିବାକୁ ପ୍ରଚେଷ୍ଟା କହନ୍ତି । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ ଠିକ୍ ୧୮୯୪ ମସିହା ବେଳକୁ ଡଉଇ ଅହଂମାନବାଦ ମନସ୍ତତ୍ତ୍ୱକୁ ଉଡ଼ାଇଦେବାକୁ ଉଦ୍ୟମ କରି ପାରିଲେନି । ସେହି ଦିନରୁ ଡଉଇ କାଣ୍ଟ୍ରିୟ କିମ୍ବା ସକ୍ରିୟ ମନର ଅସ୍ତିତ୍ୱରେ ବିଶ୍ୱାସ କଲେନାହିଁ । ଏକ ସକ୍ରିୟ

(1) History of Psychology—G. S. Brett 1921 vol—3 Page—261.

(2) Self—( Mind —1890—15, 58, 74 )

ଜ୍ଞାତା ଭାବରେ ମନଯେ ଅଛି କିମ୍ବା ସମସ୍ତ ଅନୁଭୂତିର ଆଧାର ଭାବରେ ଏକ ନିର୍ଦ୍ଦିଷ୍ଟ ମନ ଯେ ଅବସ୍ଥିତ, ଏକଥା ଡିଉଇ ଆଉ ସ୍ୱୀକାର କଲେନି । କେବଳ ଅନୁଭୂତିର ଏକ ଅବାରିତ ଧାରାକୁ ସ୍ୱୀକାର କରିଗଲେ । ନିଜ ବିଷୟରେ ଅବଗତ ହେବାକୁ ସେ ସମୁଦାୟ ଚେତନା ତଥା ଅନୁଭୂତିର ଏକ ଅଂଶ ବୋଲି ମନେକଲେ । "Dewey insists upon the seamless character of experience" To be aware of oneself is merely a part of, the total circuit of awareness. It is an event belonging to the larger whole. No need to pastulate a 'substantine person as carrier and locus of a circuit."

ଡିଉଇଙ୍କର ଏକ ପ୍ରତିଷ୍ଠିତ ସନ୍ଦର୍ଭ ହେଉଛି "The reflex are concept in Psychology" ମନସ୍ତାତ୍ତ୍ୱିକ ସମସ୍ତ ପ୍ରତ୍ୟୟ ଗୁଡ଼ିକ ସର୍ବଦା ପ୍ରତିବର୍ତ୍ତୀନୁଗାମୀ ଅଟନ୍ତି ଏହାହିଁ ମନୁଷ୍ୟର ଆଚରଣର ମୂଳକଥା ; କିନ୍ତୁ ଏ କଥାଟି ପୁଣି ଡିଉଇଙ୍କ ମନକୁ ସେପରି ପାଇଲାନାହିଁ । ମନୁଷ୍ୟର ସମସ୍ତ ଆଚରଣ ମଧ୍ୟରେ ସେ ଏକ ସମନ୍ୱୟ ଖୋଜି ବସିଲେ । ଏହା ଫଳରେ ଡିଉଇ ଅଭ୍ୟାସକୁ ସମସ୍ତ ଆଚରଣର ମୂଳାଧାର ବୋଲି ଯୁକ୍ତି ବାଢ଼ିଲେ ଏବଂ ଜେମ୍ସ ତଥା ଅନ୍ୟାନ୍ୟ Associonistsଙ୍କ ମତାମତକୁ ମଧ୍ୟ ଖଣ୍ଡନ କଲେ । ଡିଉଇ କହନ୍ତି—(2) "We must protest against the tendency in Psychological literature to limit its meaning to repetition........The essence of habit is an acquired predisposition to ways or modes of response, not to particular acts excepts as, under special condition, these express a way of behaving. Habit means special sensitiveness or accessibility to certain classes of stimuli, standing predilictions and aversious, rather than bare recurvance of a specific acts. It means will." ଡିଉଇ ଅଭ୍ୟାସକୁ ସଂକଳ୍ପ (will) ସହିତ ସମତୁଲ କରି କହିଛନ୍ତି ଯେ ଅଭ୍ୟାସ ଗୁଡ଼ିକ ସମସ୍ତ ପ୍ରକାର ଆଚରଣ ବା ଆଗ୍ରହର ଉପାଦାନମାନ । ଏତଦ୍‌ଭିନ୍ନ ଅଭ୍ୟାସ ଗୁଡ଼ିକ ପରସ୍ପର ମଧ୍ୟ ସ୍ୱାଧୀନ ନୁହନ୍ତି । କାରଣ ଗୋଟିଏ ଅଭ୍ୟାସ ଅନ୍ୟ ଏକ ଅଭ୍ୟାସ ଉପରେ ପ୍ରଭାବ ପକାଇଥାଏ ।

---

(1) Psycholegical Review—1896—3, 357—370.
(2) Human Nature and Conduct—Page—41.

ତେଣୁ ମନୁଷ୍ୟର ଚରିତ୍ର ଅଥବା ଆଚରଣ ହିଁ ତାର ସମସ୍ତ ପ୍ରକାର ଅଭ୍ୟାସକୁ ସଂଯତ ଏବଂ ସଂଗୃହୀତ କରିଥାଏ ; କିନ୍ତୁ ବ୍ୟକ୍ତିର ବ୍ୟକ୍ତିତ୍ୱ ତଥା ଚରିତ୍ର ଯାହା କରିବାକୁ ସକ୍ଷମ ହେଉଥାଏ, ସେଗୁଡ଼ିକ ସବୁ ସେ ତାର ପାରିପାର୍ଶ୍ୱିକ ଅବସ୍ଥାର ପ୍ରଭାବରେ କରୁଥାଏ । ଏଥିରେ ଇଚ୍ଛାଶକ୍ତି ତଥା ସଂକଳ୍ପର କାର୍ଯ୍ୟକାରିତା ଓ ଭୂମିକା ସେପରି ନଥାଏ । ବିବେଚନା ଏବଂ ସଂକଳ୍ପ ପରିସ୍ଥିତିକୁ ଆୟତ୍ତ କରିବାର୍ଥେ ଏକ ପ୍ରଚେଷ୍ଟା ମାତ୍ର । **(1) Deliberation and Will are a matter of trial acts executed incipiently, in imagination not in overt fact.** ଡିଉଇଙ୍କର ଉକ୍ତ ଅଭ୍ୟାସ ବା ହାବିଟ୍ ତାଙ୍କ ନୀତିଶାସ୍ତ୍ରର ଏକ ବଡ଼କଥା ; କିନ୍ତୁ ଡିଉଇ ଏହି ଅଭ୍ୟାସ ସମ୍ବନ୍ଧରେ ଯାହାସବୁ କହିଛନ୍ତି, ସେଗୁଡ଼ିକୁ ମଧ୍ୟ ସେ ପରେ ପରେ ଅନ୍ୟ ଏକ ପ୍ରକାରରେ ଉପସ୍ଥାପିତ କରିଛନ୍ତି । ଯଥା—**(2) "With habit alone there is a machine like repetition, a duplicating. recurrance of old acts"** ଠିକ୍ ଏହି କଥାଟିଏ ପୁନରାବୃତ୍ତି ସେ ତାଙ୍କର ନୀତିଶାସ୍ତ୍ର ପୁସ୍ତକରେ କରିଛନ୍ତି । **(Habit covers with very make up of desires** ; କିନ୍ତୁ ମନସ୍ତତ୍ତ୍ୱବିତ୍‌ମାନେ ଡିଉଇଙ୍କ 'ଅଭ୍ୟାସ'ର ଏତାଦୃଶ ବ୍ୟାଖ୍ୟାନକୁ ବୁଝିବାକୁ ଅକ୍ଷମ । ତଥାପି ଡିଉଇଙ୍କର ମତାମତ ବହୁ ମନସ୍ତତ୍ତ୍ୱବିତ୍‌ଙ୍କର ଦୃଷ୍ଟି ଆକର୍ଷଣ କରିବା ସଙ୍ଗେ ସଙ୍ଗେ ମନସ୍ତତ୍ତ୍ୱ କ୍ଷେତ୍ରରେ ଯଥେଷ୍ଟ ପ୍ରଭାବ ପକାଇ ପାରିଛି ।

ବାସ୍ତବିକ୍ ବ୍ୟକ୍ତି ଉଷ୍ଟିରହିବା ପାଇଁ ତାର ସର୍ବଦା ଅଭିପ୍ରେରଣା ଆବଶ୍ୟକ । ମନୁଷ୍ୟର ଅଭିପ୍ରେରଣାଗୁଡ଼ିକ ; ତେଣୁ ଡିଉଇ କହନ୍ତି—**"(3) Motives are as numerous as are original impulsive activities multiplied by the diversified consequences they produce as operate under diverse conditions."**

ଡିଉଇଙ୍କ ମତରେ ବର୍ତ୍ତମାନ ହିଁ ବଡ଼କଥା । ଅତୀତ ଏବଂ ଭବିଷ୍ୟତ କଥା ଚିନ୍ତାକରି କିଛି ଲାଭନାହିଁ । ମନୁଷ୍ୟର ଅଭିପ୍ରେରଣାଗୁଡ଼ିକ ତାର 'ଅଭ୍ୟାସର' ବଶବର୍ତ୍ତୀ ଏବଂ ଅଭ୍ୟାସର ଉପାଦାନ ମାତ୍ର । ଏହି ଅଭ୍ୟାସ ଫଳରେ ହିଁ ଆମେ ବଞ୍ଚି ଏବଂ ବଞ୍ଚିବାକୁ ଶିକ୍ଷା କରିଥାଉ ; କିନ୍ତୁ ମନୁଷ୍ୟର ଅଭ୍ୟାସର ପରିବର୍ତ୍ତନ ସଙ୍ଗେ ସଙ୍ଗେ ତାର ଅଭିପ୍ରେରଣାଗୁଡ଼ିକ ମଧ୍ୟ ପରିବର୍ତ୍ତିତ ହୋଇଥାଏ । ପ୍ରତ୍ୟେକ ଅଭିପ୍ରେରଣାଗୁଡ଼ିକର

---

(1) Human Nature and Conduct—Page-190
(2) Human Nature and Conduct—Page-180
(3) Human Nature and Conduct—1-2

କୌଣସି ନା କୌଣସି ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟ ଥାଏ । କାରଣ ମନୁଷ୍ୟର ସ୍ଥିତ ଓ ପ୍ରଗତି ଉକ୍ତ ଅଭିପ୍ରେରଣାଗୁଡ଼ିକ ଉପରେ ସମ୍ପୂର୍ଣ୍ଣ ନିର୍ଭର କରେ । ଶେଷରେ ଏତିକ କହିଯାଇପାରେ ଯେ ଡିଉଇଙ୍କ ବ୍ୟକ୍ତି ଏକ ନିର୍ଦ୍ଦିଷ୍ଟ ବିଶିଷ୍ଟ ଏବଂ ପ୍ରଗତିକାମୀ ବ୍ୟକ୍ତି ବିଶେଷ ଅଟନ୍ତି ।

ଡିଉଇଙ୍କ ଚିନ୍ତନ ତାଙ୍କର ଅନୁସନ୍ଧାନର ଏକ ପ୍ରତିଶବ୍ଦ ସଦୃଶ । ଡିଉଇଙ୍କ ମତରେ ଚିନ୍ତନର ଉତ୍ପତ୍ତି ମନୁଷ୍ୟ 'ଅଭ୍ୟାସ'ର ଏକ ପରିଣତି ମାତ୍ର । (1) **Thought is born as the twin of impulse in every moment of impeded habit."** ମନ ଯେତେବେଳେ କାର୍ଯ୍ୟକାରୀ ଏବଂ ସକ୍ରିୟ ହୋଇ ବ୍ୟବହୃତ ହୁଏ । ସେତେବେଳେ ତାକୁ 'ଚିନ୍ତନ' କହନ୍ତି **(Thought is mind in use)** । ଚିନ୍ତନ ଏବଂ ବୁଦ୍ଧି ହେଉଛନ୍ତି ମନୁଷ୍ୟର ଆୟୁଧ ତଥା ସାଧନ ସ୍ୱରୂପ । ଏହି ଚିନ୍ତନ ଏବଂ ବୁଦ୍ଧି ବଳରେ ହିଁ ଆମେ ଆମର ସମସ୍ତ ଅଭିପ୍ରେରଣାର ଲକ୍ଷ୍ୟ ହାସଲ କରିଥାଉଁ—ତେଣୁ ପ୍ରତ୍ୟେକ ଅଭିପ୍ରେରଣାର ସାଧନ ତଥା ଅବଲମ୍ବନ ହେଉଛି ଉକ୍ତ ବୁଦ୍ଧି ତଥା ଚିନ୍ତନ **(Thought and Intelligence)** । ଏହି ବୁଦ୍ଧି ତଥା ଚିନ୍ତନ ବଳରେ ହିଁ ଆମେ ଜୀବନ ସଂଗ୍ରାମର ପ୍ରତ୍ୟେକ କ୍ଷେତ୍ରରେ ବିଚାର ତଥା ସିଦ୍ଧାନ୍ତ ନେଇଥାଉଁ ; କିନ୍ତୁ ଡିଉଇଙ୍କ ଚିନ୍ତନର ଏତାଦୃଶ ବ୍ୟାଖ୍ୟାନ ଯେତେ ଯୁକ୍ତିଯୁକ୍ତ ଓ ବଳିଷ୍ଠ ପରି ମନେ ହୁଏନା ।

ଶିକ୍ଷା କ୍ଷେତ୍ରରେ ଡିଉଇ ମନସ୍ତତ୍ତ୍ୱର ଅନୁକରଣ କଥାଟି ବୁଝାଇଦେବାକୁ ଯଥେଷ୍ଟ କୁଣ୍ଠା ପ୍ରକାଶ କରିଛନ୍ତି । ତାଙ୍କ ମତରେ ଅନୁକରଣ କେବଳ ପୁରାତନ ଅଭ୍ୟାସର ପୁନରାବୃତ୍ତି ମାତ୍ର । ଏହା ଶିଶୁର ଶିକ୍ଷା ଗ୍ରହଣରେ ବିଶେଷ ସାହାଯ୍ୟ କରେ ନାହିଁ । ଶିକ୍ଷା ଗ୍ରହଣରେ ଶିଶୁର ସ୍ୱାଧୀନତା ଆବଶ୍ୟକ । ଅନୁକରଣରେ ଶିଶୁର ସ୍ୱାଧୀନ ମନୋବୃତ୍ତିର ଅବକାଶ ନ ଥାଏ । ଡିଉଇ କହନ୍ତି ମନସ୍ତତ୍ତ୍ୱ ଏପରିକି ସାମାଜିକ ଓ ରାଜନୈତିକ ପରିସ୍ଥିତି ସହିତ ତାଳଦେଇ ଚାଲିବା ଦରକାର ମନସ୍ତତ୍ତ୍ୱ ଏବଂ ସମାଜତତ୍ତ୍ୱ ତଥା ରାଜନୀତି ବିଜ୍ଞାନ ମଧ୍ୟରେ ଏକ ଧାରାବାହିକ ସୁସମନ୍ୱୟ ଆବଶ୍ୟକ । ସାମାଜିକ ପ୍ରଥା ହେଉଛି 'ଅଭ୍ୟାସ' ଗଠନର ମୂଳକାରଣ । ସମାଜର ପ୍ରଗତି ସଙ୍ଗେ ସଙ୍ଗେ ସାମାଜିକ ପ୍ରଥାଗୁଡ଼ିକର ପରିବର୍ତ୍ତନ ଘଟିଲେ ଯାଇ ମନୁଷ୍ୟ—'ଅଭ୍ୟାସ'ର ପରିବର୍ତ୍ତନ ଘଟିବ ନଚେତ୍ ସମାଜ ତଥା ରାଜନୀତି ସର୍ବଦା ଏକ ସ୍ଥାଣୁବିଜ୍ଞାନ ହୋଇ ସମାଜର କ୍ଷତି କରିବା ହିଁ କରିବ ; ତେଣୁ ସାମାଜିକ ମନସ୍ତତ୍ତ୍ୱବିତ୍‌ମାନେ ଏଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ଦିଅନ୍ତୁ ବୋଲି ଅଧ୍ୟାପକ ପ୍ରଜ୍ଞାମୀ ଡିଉଇ ସତର୍କ କରାଇ ଦେଇଛନ୍ତି ।

---

(1) Human Nature and Conduct—171